# ଅର୍ଦ୍ଧାଙ୍ଗିନୀ



ଉତ୍କଳ
ନୃତ୍ୟ
ନାଟକ
ସଙ୍ଗୀତ
ଏକାଡେମୀଙ୍କ
ଦ୍ୱାରା
ଅନୁଷ୍ଠିତ
୧୯୫୭
ନାଟକୋତ୍ସବରେ
ସର୍ବଶ୍ରେଷ୍ଠ
ନାଟ୍ୟରଚନା
ରୂପେ
ପୁରସ୍କୃତ



ଗୋପାଳ ଛୋଟରାୟ

ବନ୍ଧୁବର

ଶ୍ରୀ ନିତ୍ୟାନନ୍ଦ ପାଲିତଙ୍କ

କର କମଳରେ

—ନାଟ୍ୟକାର

## ଦୁଇଟି ଅଭିମତ

ଗତାନୁଗତିକ ଓ ପରମ୍ପରାଗତ ବିଷୟବସ୍ତୁ ନବୀନ ମନୋଭାବ ଛାଡ଼ି ଏକ ନୂତନ ଦୃଷ୍ଟି କୋଣରୁ ଏହା ରଚିତ ହୋଇଥିବା ପ୍ରଶଂସାର କଥା ।...ବିଭିନ୍ନ ଦୃଷ୍ଟି କୋଣରୁ ବିଚାର କରି ଦେଖିଲେ ଭାରତୀୟ ଛାୟାଚିତ୍ର ଓ ରଙ୍ଗମଞ୍ଚ ଜଗତର ଗତାନୁଗତିକ ପ୍ରେମ ବା ରକ୍ତାକ୍ତ ଯୁଦ୍ଧର କାହାଣୀଠାରୁ ଅର୍ଦ୍ଧାଙ୍ଗିନୀ ଯେ ଯଥେଷ୍ଟ ଉଚ୍ଚରେ ଏବଂ ଯଥେଷ୍ଟ ସୁରୁଚି ସମ୍ପନ୍ନ, ଏଥିରେ ସନ୍ଦେହ ନାହିଁ ।

—ଅଧ୍ୟାପକ ବିଧୁଭୂଷଣ ଦାସ

× ' × × ×

ଅର୍ଦ୍ଧାଙ୍ଗିନୀ ଓଡ଼ିଆ ନାଟ୍ୟକଳାର ଗତାନୁଗତିକ ଭାବଧାରାକୁ ଅତିକ୍ରମ କରି ଏକ ଅଭିନବ ପରମ୍ପରା ସୃଷ୍ଟି କରିଛି । ଜୀବନର ବାସ୍ତବ ଚିତ୍ର ଏଥି ପୂର୍ବରୁ ଅନ୍ୟ କୌଣସି ନାଟକରେ ଏତେ ନିଖୁଣ ଭାବରେ ପରିବେଷିତ ହେବାର ଦେଖାଯାଇ ନଥିଲା । ମୂଳରୁ ଶେଷ ପର୍ଯ୍ୟନ୍ତ ନାଟକୀୟ ଉତ୍କଣ୍ଠା ସୁରକ୍ଷିତ ହୋଇଛି ।

—'ସମାଜ—'

# ଆତ୍ମକଥା

୧୯୫୭ ମସିହା ଜୁନ ମାସର ଶେଷ ସପ୍ତାହ । ବନ୍ଧୁ ଶ୍ରୀ ନିତାଇ ପାଲିତ ଓ ଶ୍ରୀ ଗୋବିନ୍ଦ ତେଜ୍ ଆସି କହିଲେ—"ଏକାଡେମୀ"ର ନାଟକୋତ୍ସବ ପାଇଁ ନେସନାଲ ମ୍ୟୁଜିକ ଆସୋସିଏସନ ସକାଶେ ଖଣ୍ଡିଏ ନାଟକ ଲେଖି ଦେବାକୁ ହବ ।"......ମୋ ଠାରୁ କୌଣସି ଉତ୍ତରର ଅପେକ୍ଷା ନ ରଖି ପାଲିତ୍ କହିଲେ—"ପ୍ଲଟ ପାଇଁ ତମକୁ ଚିନ୍ତା କରିବାକୁ ପଡ଼ିବ ନାହିଁ । ପ୍ଲଟ ମୁଁ ଦଉଚି ।" ସେଇଠି, ମୁହେଁ ମୁହେଁ, ମାତ୍ର କେଇ ପଦ କଥାରେ ନାଟକର ଗଳ୍ପାଂଶର ସୂଚନା ସେ ମତେ ଦେଇଗଲେ । ଦୃଶ୍ୟ-ବିଭାଗ-ବିହୀନ ତିନୋଟି ଅଙ୍କ, ମାତ୍ର ତିନ-ଘଣ୍ଟାର ଘଟଣା ଓ ସ୍ୱଳ୍ପ କେତୋଟି ପାତ୍ର-ପାତ୍ରୀଙ୍କୁ ନେଇ ନାଟକଟିକୁ ଲେଖିବାକୁ ହେବ । ଆପାତଃ-ଦୃଷ୍ଟିରୁ ଏ କ୍ଷେତ୍ରରେ ନାଟ୍ୟରଚନାର ପରିସର ସୀମାବଦ୍ଧ—ନାଟ୍ୟକାରର ସ୍ୱାଧୀନତା ସଙ୍କୁଚିତ । ଏଇ ପରିସ୍ଥିତିରେ, ହାତରେ ମୋଟେ ପନ୍ଦର ଦିନ ସମୟ ନେଇ ନାଟକ ରଚନାରେ ବ୍ରତୀ ହେଲି ।

ନାଟକର ରଚନା ସମୟରେ ନିତାଇ ବାବୁଙ୍କର ଅକୁଣ୍ଠ ସହଯୋଗ ମୁଁ ପାଇ ପାରିଛି । ଜୁଲାଇ ମାସ ୧୫ ତାରିଖରେ ନେସ୍-ନାଲ ମ୍ୟୁଜିକ ଆସୋସିଏସନ ତରଫରୁ "ଅର୍ଦ୍ଧାଙ୍ଗିନୀ" ନାଟକୋ-ତ୍ସବରେ ଅଭିନୀତ ହେଲା । ଦୁଇ ଦିନ ପରେ ସମ୍ବାଦ ପାଇଲି, ଏହା ସର୍ବଶ୍ରେଷ୍ଠ ମୌଳିକ ରଚନା ରୂପେ ପୁରସ୍କୃତ ହୋଇଛି । ଏ ଗୌରବ ପାଇଁ ମୁଁ ବ୍ୟକ୍ତିଗତ ଭାବେ ଶ୍ରୀ ନିତାଇ ପାଲିତ୍ ଓ ସର୍ବତୋଭାବେ ମିଉଜିକ ଆସୋସିଏସନଙ୍କ ନିକଟରେ ଋଣୀ ।

ଆଲାମଚାନ୍ଦବଜାର
କଟକ-୨
ଦଶହରା—୧୯୫୯

ଗୋପାଳ ଛୋଟରାୟ

"ଅର୍ଦ୍ଧାଙ୍ଗିନୀ" ଯଦି ଆପଣଙ୍କୁ ଆନନ୍ଦ ଦେଇଥାଏ, ତେବେ ଗୋପାଳ ଛୋଟରାୟଙ୍କ ରଚିତ ଏଇ ସବୁ ନାଟକର ସନ୍ଧାନ ନଅନ୍ତୁ—

ଭରସା

ପରକଲମ

ଝିନ୍‌ଜା

ଅମଡ଼ାବାଟ

ଜନଶତ୍ରୁ

ନୂଆବୋଉ

ପଥିକବନ୍ଧୁ

ଫେରିଆ

ନଷ୍ଟ ଉର୍ବଶୀ

ପଦ୍ମାଳୟା

ଶଙ୍ଖାସିନ୍ଦୂର

ଓ

ପୂର୍ବାପୂର ପାରିବାରିକ

# ପ୍ରଥମ ଅଭିନୟ ରଜନୀ

ତା ୧୫-୨-୫୭

## ପରିଚୟ ଲିପି

| | |
|---|---|
| ଶାନ୍ତିଲତା ପଣ୍ଡିତ | ମାୟା |
| ଗୋବିନ୍ଦ ତେଜ | ବିକାଶ |
| ରବି ଦାସ | ଅଭୟ |
| ଭଗବତୀ ଘୋଷ | ଡାକ୍ତର |
| ଅବନୀ କୁମାର ରାୟ | ବଡ଼ମାମୁଁ |
| ବିନୋଦ ପଟ୍ଟନାୟକ | ଅନାଦି |
| ବିମଳ ରଂଜନରାୟ | ମାଧବ |
| କୁମାର ବାଦଲ | ଅଶୋକ |
| କୁମାରୀ ରନୁ | ମୀରା |

ଛବି, ନମାଜ, ଜୟନ୍ତୀ, ସୀତା
ଦେବକୀ, ରୋହିଣୀ
ଧଡ଼ି, ସ୍ୱର୍ଣ୍ଣ
ଇତ୍ୟାଦି

## ଗୀତରଚନା

ନିକୁଞ୍ଜକିଶୋର ଦାସ

## ସ୍ୱର ସଂଯୋଜନା

ଭୁବନେଶ୍ୱର

ମଞ୍ଚସଜ୍ଜା

ଭେଦ ପ୍ରକାଶ

ରୂପସଜ୍ଜା

ସର୍କାର ବ୍ରଦର୍ସ

ଆଲୋକ

ମଧୁଦତ୍ତ

ସ୍ମାରକ

ବ୍ରଜ ଓ ବିମଲ

ମଞ୍ଚମାୟା

ଉମାନାଥ ପାଣି ଓ ବି. ପରିଜା

ମୁଖ୍ୟ ବ୍ୟବସ୍ଥାପକ

ରମାନନ୍ଦ କାନୁନଗୋ

ନିର୍ଦ୍ଦେଶ

## ନିତ୍ୟାନନ୍ଦ ପାଲିତ

ପରିବେଷକ

ନାସ୍‌ନାଲ୍ ମ୍ୟୁଜିକ ଆସୋସିଏସନ୍, କଟକ

# ଅର୍ଦ୍ଧାଙ୍ଗିନୀ ଓ ଆଧୁନିକ ନାଟକ

"......ଏଇ ଶିରୋନାମାରେ ହୁଏତ ଏକ ବିରାଟ ପ୍ରବନ୍ଧ ଲେଖାଯାଇ ପାରେ । ତା'ର ଅବତାରଣା ଏଠାରେ କରା ନ ଯାଉ । "ଅର୍ଦ୍ଧାଙ୍ଗିନୀ" ବାସ୍ତବ ପକ୍ଷେ ଆଧୁନିକ-ନାଟକ-ପର୍ଯ୍ୟାୟ-ଭୁକ୍ତ ହୋଇପାରିଛି କି ନା, ତା'ର ବିଚାର ପାଇଁ କେତେକ ସୂଚନା ମାତ୍ର ଏଠି ଦିଆଯାଉଛି :

ଅଙ୍କ କିମ୍ବା ଦୃଶ୍ୟର ବହୁଳତାରେ ଅର୍ଦ୍ଧାଙ୍ଗିନୀ ନାଟକ ଭାରାକ୍ରାନ୍ତ ନୁହେଁ ।

ଗୋଟିଏ ହେଲେ ବି ଅନାକାଙ୍କ୍ଷିତ ଚରିତ୍ର-ସୃଷ୍ଟି ଏଥିରେ କରାଯାଇନି ।

ଅପ୍ରୟୋଜନୀୟ ନୃତ୍ୟ ଓ ଗୀତ ଏ ନାଟକରେ ଆଦୌ ନାହିଁ ।

ଭାବ ଓ ଭାଷାର ( Action and Diction ) ଭାରସାମ୍ୟ ରକ୍ଷା କରିବାର ଚେଷ୍ଟା କରାଯାଇଛି ।

ନାଟକୀୟ ଦ୍ୱନ୍ଦ୍ୱ, ସଂଘର୍ଷ ଓ ସଂଘାତ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ବାସ୍ତବତାର ସୁରକ୍ଷା ପାଇଁ ସତର୍କ ଦୃଷ୍ଟି ଦିଆଯାଇଛି ।......"

ଏଇ ନାଟକର ପରିଶିଷ୍ଟ ରୂପେ ଅଧ୍ୟାପକ ଗିରିଜା ଶଙ୍କର ରାୟଙ୍କ ଲିଖିତ ସମାଲୋଚନାମୂଳକ ପ୍ରବନ୍ଧ "ଓଡ଼ିଆ ନାଟକ" ସ୍ଥାନ ପାଇଛି । ପ୍ରବନ୍ଧଟିର ରଚନା କାଳ ୧୯୫୭ ମସିହା ଏପ୍ରିଲ୍ ମାସ—ଅର୍ଦ୍ଧାଙ୍ଗିନୀ ନାଟକର ରଚନା କାଳ ସେଇ ୧୯୫୭ ମସିହା ଜୁଲାଇ ମାସ । ଏଇ ଦୃଷ୍ଟିରୁ ଏ ପ୍ରବନ୍ଧ ଓ ନାଟକର ଏକତ୍ର-ପ୍ରକାଶର ଯୁକ୍ତିଯୁକ୍ତ ନିଶ୍ଚୟ ରହିଛି । ପ୍ରବନ୍ଧଟିକୁ ପ୍ରକାଶ କରିବା ପାଇଁ ଅଧ୍ୟାପକ ରାୟ ସଦୟ ଅନୁମତି ଦେଇଥିବାରୁ ମୁଁ ତାଙ୍କଠାରେ କୃତଜ୍ଞ ।

**ଗୋପାଳ ଛୋଟରାୟ**

# ( ପ୍ରଥମ ଅଙ୍କର ଗୀତ )

ଥିର ଥିର ମୋ' ପଛେ ଛପି ଛପି ଆସୁ ଥା'
ବାଘ ଛକି ବସିଚ, ଛେଳି ନବ ଦୁଇଟା । ୦ ।

କଂସା କବାଟ କଳାରେ ବାଡ଼ ଭିତରେ ଘେରା
କାରସାଜି ଖଟିବନ ହଟିଯିବୁ ତୁ ପରା
ବାଘ ମାମୁଁରେ ବାଘୁମାମୁଁ, ଯା' ଯା' ରେ ଯା' ଘଲା । ୧ ।

ଦଂସା ଭୁଛା ଉଡ଼ବରେ ଭେଳିକ ଯେଚେ ଲଗା
ଲାଞ୍ଜ ପିଟି ଝାମ୍ପ ମାର ନଷ୍ଟେ ପାଇବୁ ଦଗା
ବାଘ ମାମୁଁ ରେ··· ··· ··· ···। ୨ ।

ନଣ ଫୁଲ ପାଟି ମେଲ ଯେତେଢେଲେ ତୁ ଡ଼ରା
ଲଡ୍ଡୁ ଲୁହାଣ ହବୁରେ ଫାଗ ଝାମ୍ପିବ ପରା
ବାଘ ମାମୁଁ ରେ··· ··· ··· ··· ··· । ୩ ।

ମିଁ ମିଁ ଜା ମାଣିକ ରଜା ଶିଙ୍ଗ ଦୁଇଟା ଗୋଜା
ଭୁଷିବ କଷି ପେଟକୁ ଚିର ବାହାର ଯିବ ମଜା
ବାଘ ମାମୁଁ ରେ··· ··· ··· ··· ··· । ୪ ।

( ଗୀତ ଓ ନୃତ୍ୟର ଚରିତ୍ର—କେତୋଟି ଛେଳି ଓ ବାଘ ),



# ପ୍ରଥମ ଅଙ୍କ

[ ସ୍ଥାନ—କଟକ ସହର । ବିକାଶ ରାୟଙ୍କ ଦ୍ୱିତଳ ବାସ-ଭବନର ତଳ ମହଲାର ପ୍ରଧାନ କକ୍ଷ । କକ୍ଷଟି ସୁବୃହତ୍ । ବାମ ଦିଗର ଦରଜା ଦେଇ ବାହାରକୁ ଯିବାକୁ ହୁଏ । ଏଇ ଦରଜାର ଦୁଇ ପାଖରେ ଦୁଇଟି ମଧ୍ୟମ ଆକାରର ଝରକା । ଉତ୍ତର ଦିଗକୁ ଅବସ୍ଥିତ ଝରକା ଭିତର ଦେଇ ଗୋଟିଏ କରବୀର ଗଛର କେତେକ ଅଂଶ ଦେଖାଯାଏ । ଏ ପାଖଟି ହେଲା କକ୍ଷର ପୂର୍ବ ଦିଗ । ପଶ୍ଚିମ ଦିଗର ଦରଜା ତଳ ମହଲାର ଅନ୍ୟାନ୍ୟ ଅଂଶ ସହିତ ସଂଯୁକ୍ତ । କକ୍ଷର ପଶ୍ଚାତ୍ ଭାଗ, ଅର୍ଥାତ୍ ଉତ୍ତର ଦିଗର ଗୋଟିଏ କୋଣରୁ ଉପର ମହଲାକୁ ସିଢ଼ି ଉଠିଯାଇଛି । ବାକି ଅଂଶତକ କାନ୍ଥଦ୍ୱାରା ଆବୃତ । ଦରଜା ନାହିଁ—କିନ୍ତୁ ଅଛି ଏକ ପ୍ରଶସ୍ତ ଝରକା । ଝରକା ସେ ପାଖରେ ଲମ୍ବି ଯାଇଛି ସୁ-ସଜ୍ଜିତ ଉଦ୍ୟାନ ।

ବିକାଶ ରାୟଙ୍କ ଆର୍ଥିକ ସଙ୍ଗତି ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀଭୁକ୍ତ । ନିଜର ମଟର କାର୍ ଅଛି—ଫୋନ୍ ଅଛି ; ସେଇ ଅନୁପାତରେ କକ୍ଷଟିର ସାଜସଜ୍ଜା ଅନୁମାନ କରାଯାଇ ପାରେ ।

କାଳ—ବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧର ପ୍ରଥମ ପାଦ ।

ସମୟ—ରାତିର ପ୍ରଥମ ପ୍ରହର ।

ସେଦିନ ବିକାଶ ଗୁପ୍ତଙ୍କ ପ୍ରଥମ ଓ ଏକମାତ୍ର ସନ୍ତାନ ଅଶୋକର ଅଷ୍ଟମ-ବାର୍ଷିକ ଜନ୍ମୋତ୍ସବ । ଉତ୍ସବର ଆନୁସଙ୍ଗିକ କୋଳାହଳ ଭିତରୁ ଶୁଭୁଛି ।

ଦୃଶ୍ୟ ଆରମ୍ଭରେ ଭିତରୁ ଆସିଲେ ବଡ଼ ମାମୁଁ । ସ୍ୱଳ୍ପ-ଶିକ୍ଷିତ ମଫସଲର ଲୋକ—କିନ୍ତୁ କଟକ ସହର ସହିତ ଯାତାୟାତର ସମ୍ପର୍କ ରହିଛି । ବୟସ—ପ୍ରାପ୍ତ ପଚାଶ ।

କକ୍ଷଟିରେ ସୋଫା ଓ ଇଜି ଚେୟାରର ଅଭାବ ନାହିଁ । କିନ୍ତୁ ବଡ଼ ମାମୁଁ ସିଧା ସଳଖ ଆସି ଗୋଟିଏ ସାଧା ଚୌକିରେ ଗୋଡ଼ ଟେକି ବସିଲେ । ତାଙ୍କୁ ଦେଖିଲେ ଜଣାଯାଏ ସେ ଏଇ ମାତ୍ର ଗଭୀର ତୃପ୍ତି ସହକାରେ ଭୋଜନ ଶେଷକରି ଆସିଛନ୍ତି । ତାଙ୍କ ହାତ ପାଖରେ ଫୋନ୍ । କିଛିଏ ପରେ ଫୋନ୍ ବାଜି ଉଠିଲା । ବଡ଼ ମାମୁଁ କିଛି ସମୟ ନିର୍ଲିପ୍ତ ହୋଇ ବସି ରହିଲେ । ତା'ପରେ କିଛିଏ ଯେମିତି ବିରକ୍ତ ହୋଇ, ତାଙ୍କର ଅନଭ୍ୟସ୍ତ ହାତରେ ଫୋନ୍ ଉଠେଇ କଥାବାର୍ତ୍ତା କଲେ । ]

ବଡ଼—ନା, କେହି ନାହାନ୍ତି ଏଠି । ...ଏଁ ? ଆଉ କାହା ଘର ? ବିକାଶ ବାବୁଙ୍କ ନିଜ ଘର ଏଇଟା । ...ମୋ କଥା ପୁଚ୍ଛୁଛନ୍ତି ? ...ମୁଁ ତାଙ୍କ ବଡ଼ ମାମୁଁ ...ଆପଣ କିଏ ଆଜ୍ଞା ? .. ନିଜେ ଶ୍ୟାମ ଚୌଧୁରୀ ? ଜୁହାର ଆଜ୍ଞା...ଜୁହାର ।

[ ଯଥା ସ୍ଥାନରେ ଫୋନ୍ ରଖି ଦେଇ ଦୁଇ ହାତ ମୁଣ୍ଡରେ ଲଗାଇ ପ୍ରଣାମ କଲେ । ଏତିକି ବେଳେ ଅଶୋକ ତା' ସାଥୀମାନଙ୍କ ସହିତ ସେଠିକି ଆସିଲା । ]

ଅଶୋକ—କାହାକୁ ଜୁହାର କରୁଛ କି ଜେଜେ ?

ବଡ଼—ଚୁପ୍ । ପାଟି କରନା । ନିଜେ ଶ୍ୟାମ ଚୌଧୁରୀ ।

ଅଶୋକ—କାହାନ୍ତି—ଏଠି ତ କେହି ନାହାଁନ୍ତି

ବଇ—ଏଇ ଟେଲିଫୋନରେ ଡାକୁଥିଲେ ପରା—

ଅଶୋକ—ଆଜ୍ଞ ତମେ ଫୋନ ରଖି ଦେଇ ତାଙ୍କୁ ହାତ ଯୋଡ଼ି ଜୁହାର କରୁଛ ? ହଃ—ବୋଲ !! ଶୁଣୁଛ ଲୋ ମୀରା ଅପା···(ସମସ୍ତେ ହସିଉଠିଲେ)

ବଇ—ଉଃ, ତୁ ଟୁଆଁ ଟା କଣ ଜାଣିଛୁ । ଏଡ଼େ ବଡ଼ ଲୋକ—ହାତ ଯୋଡ଼ି ଜୁହାର କରବ ନ ? (ପୁଣି ଫୋନ୍ ଉଠାଇ) ଆଜ୍ଞା !! ଏଁ···ନମ୍ବର ? କ ନମ୍ବର ଆଜ୍ଞା ? —ତମେ କଏ ମା ।

ଅଶୋକ—ଶୁଣ୍ ଲୋ ମୀରା ଅପା, ଜେଜେ କହୁଛନ୍ତି "ମା" ।

(ପୁଣି ହସ)

ବଇ—ଉଃ ! ତମେ ଟୁଆଗୁଡ଼ାକ କାହିଁକି ଏମିତି ହେଉଛ ? କିଛି କରେଇ ଦବନି ପରା !! (ଫୋନ୍‌ରେ କହିଲେ) ମୁଁ ଚୌଧୁରୀଙ୍କୁ ଡାକୁଛି ମା । ଛାଡ଼ି ଦେଲେଣି ? କଣ ଛାଡ଼ି ଦେଲେଣି ? କଣ ? ଫୋନ ଛାଡ଼ି ଦେଲେଣି ? (ଫୋନ ରଖି ଦେଇ) ଅଭଦ୍ର ।

ଅଶୋକ—ଜେଜେ, କିଏ ଅଭଦ୍ର ?

ବଇ—ମୁଁ ଏଡ଼େ ଖାତିର୍‌ରେ ଜୁହାର କରୁଛି—ତମେ ଛାଡ଼ି ଦେଇ ଚାଲିଗଲ !

ଅଶୋକ—ସେ କଣ କହୁଥିଲେ କି ଜେଜେ ?

ବଇ—ଝିଅପିଟା କହୁଥିଲେ । ଛାଡ଼ି ତ ଦେଲେ, ଆଉ କହିଲେ କଣ ?

ଅଶୋକ—ତମେ ଡରୁଚ କାହିଁକି ଜେଜେ ? ମୁଁ ତାଙ୍କ ନମ୍ବର ଜାଣେ । ମୁଁ ବୁଝି ଦଉଚି । (ଫୋନ୍ ଉଠାଇ) ଥ୍ରି—ଟ୍ୱାନ୍—ଫାଇଭ୍—ମୁଁ ଅଶୋକ କହୁଛି···ଆସିବେ ନାହିଁ ? ଅଜି ମୋ ଜନ୍ମ ଦିନ—ଆପଣ ଆସିବେ ନାହିଁ···? କାହିଁକି ? ···ହଉ ମୁଁ ବାପାଙ୍କୁ କହି ଦେବି । କିଏ ? ବଇ ଜେଜେ ? ଏଇଠି ଅଛନ୍ତି । (ବଇଙ୍କୁ) ଜେଜେ, ତୁମକୁ ଡାକୁଛନ୍ତି ଆସ ।

ବଉ—ନାଇଁ, ନାଇଁ, ତାଙ୍କୁ ମନା କରଦେ—ଆମର ଦର୍କାର ନାହିଁ ।

ଅଶୋକ—ଜେଜେ ଡରୁଛନ୍ତି···ଆସୁ ନାହାନ୍ତି । ନମସ୍କାର । (ଫୋନ୍ ରଖି) ଦେଖିଲ ଜେଜେ, ମୁଁ କେମିତି ଫୋନ୍ କଲି ?

ବଉ—ଓ, ଏଇ ସବୁ କାମରେ ବାହାଦୁରୀ ।

ଅଶୋକ—ତେମେ ଖାଇ ସାରିଲଣି ଜେଜେ ?

ବଉ—ହଁ ।

ଅଶୋକ—ସିଗ୍ରେଟ ଟାଣିବ ?

ବଉ—ନା ।

ଅଶୋକ—ଆଜି କଣ କରିବ ? ମାଛ ଗଡ଼େଇବ ?

ବଉ—ମାଛ ଗଡ଼େଇବ ? କ ମାଛ ?

ଅଶୋକ—ଆମ ଅନାଦି ଯେମିତି ମାଛ ଗଡ଼ାଏ ମ !

ବଉ—ଯା କହୁଚୁରେ ବାପା ! ଏଠି ଖାଲି ଏମିତି ବସିବା ଅପେକ୍ଷା ମାଛ ଗଡ଼େଇବା ଭଲ ।

ଅଶୋକ—ସତରେ ଜେଜେ ତମେ ମାଛ ଗଡ଼େଇବ ? ମାଛ ଅଛି ।

ବଉ—ତୁ ଟା କେଉଁଠୁ ବାହାପିଆଟାରେ ।

ଅଶୋକ—ବାହାପିଆ ନା ଆଉ କଣ ? ଏଇ ନିଅ ।

[ ପକେଟରୁ ଗୋଟାଏ ଝିନୁକ ବାହାରି କରି ଦେଲା ]

ବଉ—ବାବ୍ବା ! ହଇରେ ତୋ ପକେଟରେ ଝିନୁକ ମାଛ ?

ଅଶୋକ—ଆମ ସ୍କୁଲକୁ ଜଣେ ବାବାଜି ଆସିଥିଲେ ଯେ, ଏ ମାଛ ସେ ମତେ ଦେଇ ଯାଇଛନ୍ତି—କହିଛନ୍ତି—ମାଛ ଗଡ଼େଇଲେ ଭଲ ପାଠ ହବ । ତେମେ ମାଛ ଗଡ଼ଉ-ଥାଅ—ଜେଜେ···ଆମେ ଯାଉଚୁ ।

[ ସେମାନେ ଉପରକୁ ଚାଲିଗଲେ ]

ବଇ—ବାହାପିଆ···ମତେ ପୁଣି ପାଠ ପଢ଼ାଉଚ ।

[ ଝୁଲାରୁ ମାଳାଟି ବାହାର କରି ପରୀକ୍ଷାସୂଚକ ଭାବେ ଦେଖି ଦେଖି ସବୁକୁ ସବୁ ଗଡ଼େଇବାରେ ଲାଗିଲେ । ଭିତରୁ ଅନାଦ୍ଧ ଆସିଲା । ଅନାଦ୍ଧକୁ ଆସିବାର ଦେଖି ବଇ ମାଳା ସହ ଝୁଲାଟିକୁ ନିଜ ପକେଟରେ ଲୁଚେଇ ଦେଲେ ]

ବଇ—ଖିଆପିଆ ଅଡୁଆ ଭୁଟିଲାଣି ଅନାଦ୍ଧ ?

ଅନାଦ୍ଧ—କୋଉଠି ଭୁଟିଲାଣି ଆଜ୍ଞା ! ( ଏଣେ ତେଣେ କଣ ଖୋଜୁଥାଏ )

ବଇ—କଣ ଖୋଜୁଚୁ କରେ ?

ଅନାଦ୍ଧ—ଗୋଟାଏ ଚଜ ଆଜ୍ଞା ।

ବଇ—କି ଚଜ ?

ଅନାଦ୍ଧ—ଝୁଲା ମାଳ ।

ବଇ—ଝୁଲା ମାଳ ? କାହାର ? ତୋର ?

ଅନାଦ୍ଧ—ହଁ ଅଜ୍ଞା ! ତେମେ ତ ଜାଣିଥିବ ବଇବାବୁ । ମାଳା ନ ଗଡ଼େଇଲେ ମୁଁ ପାଣି ଛୁଏଁ ନାହିଁ ।

ବଇ—ବୁଝିଲି । ···ସେଇଠୁ ?

ଅନାଦ୍ଧ—ବାବାଜି ମହାପ୍ରଭୁଙ୍କଠୁ ନାମ ନେଇଚି । ନିଇତି ସଞ୍ଜକୁ ମାଳା ନ ଗଡ଼େଇଲେ ଅନ୍ନ ଜଳ ଛୁଇଁବି ନାହିଁ ।

ବଇ—ଏଠି ଆସି ଖୋଜୁଚୁ କଣ ?

ଅନାଦ୍ଧ—ଆଜି ତ ବାରି ଲୋକଙ୍କ ଯିବା ଆସିବା, କାଳେ କୋଉଠି ଆଣି କିଏ ପକେଇ ଦେଇଥିବ ।

ବଇ—ଏ ଘରକୁ କେହି ଆଣିବେ ନାହିଁ, ତେଣେ ଯାଇ ଦେଖ ।

ଅନାଦ୍ଧ—ମୋର ତେଣେ ବୁନିଆ କାମ । କାମ କରିବ କା ବାରଆଡ଼େ ଖୋଜ ହଉଥିବ···( ଯାଉ, ଯାଉ ଫେର )

ତେମେ ଯୋଉ ବର୍ଷୁଗଣ୍ଠିରେ ଖାଇ ବସି ନ ଥେଲ ବଇବାବୁ ସେଇ ଘରେ ଥିଲ···ଠିକ୍ ତମର ମୁଣ୍ଡ ଉପରକୁ ଟଙ୍ଗା ହୋଇଥିଲା । ତେମେ ଦେଖି ନ ?

ବଇ—କ କଥା ତୁ କହୁଚୁରେ ? ମୁଁ କାହିଁକ ତୋ ଝୁଲ ମାଳ ଦେଖିବ ?

ଅନାଦ—କାଲେ ଆଖି ପଡ଼ି ଯାଇଥିବ ବୋଲ କହୁଥିଲ ।

ବଇ—ମୁଁ ତୋ ଝୁଲ ଫୁଲ କଛି ଦେଖିନ । ତେଣେ ଯାଇ ଦେଖ୍ । କୋଉଠି ଥିବ ।

[ ଅନାଦ ଚ୍ଲଲ ଯାଉଥିଲ ବେଳେ ଅଶୋକ ସିଡ଼ି ଉପର ଦରଜାରେ ଆସି ଠିଆ ହେଲ ]

ଅଶୋକ—ଜେଜେ, ବୋଉ କହୁଲ ତେମେ ଚ୍ଲଲିଯିବ ନାଇଁ, ରହିବ---କାମ ଅଛି ।

[ ଅନାଦ ଫେରଲ]

ଅନାଦ—ଲୁନବାବୁ !

ଅଶୋକ— କଣ ?

ଅନାଦ—ମୋ ଝୁଲ ମାଳଟି ଦେଖିଚ ?

ଅଶୋକ—ହଁ ।

ଅନାଦ—କାଇଁ ? କୋଉଠି ଅଛି ?

ଅଶୋକ—କହିବ ଜେଜେ ?

ବଇ—କଣ କହିବୁ ?

ଅଶୋକ—ତେମେ ରଖିନ ?

ବଇ—ବାହାପିଅ –

ଅଶୋକ—ଜେଜେଙ୍କୁ ପଚ୍ଚରେ ଅନାଦ··ସେଇ ବସି ମାଳା ଗଡ଼ଉଥିଲେ ( ଚ୍ଲଲଗଲ ) ।

ଅନାଦ—ଏଇଟା କଣ ଭଲ ହେଲ ବଇବାବୁ ?
ବଇ—କଣ ଭଲ ହେଲ ?
ଅନାଦ—ମୋ ମନ୍ତ୍ରସ ମାଳ ତମେ ଆଣି ଗଢ଼ୁଛ ?
ବଇ—ତୁ ଦେଖିଚୁ ମୁଁ ଆଣିଚ ?
ଅନାଦ—କୁନ ବାବୁ ପସ କହିଲେ—
ବଇ—ସେଇଟା ନପଠ ବାହାପିଆଠାଏ···ସେ ଆଣି ମତେ ଦେଇଚ—
ଅନାଦ—ସିଏ କାଇଁକ ଆଣନ୍ତେ—ତମେ ସେ ଘରେ ଖାଇ ବସିଥେଲ—
ବଇ—ଅନାଦ !
ଅନାଦ—ପାଟି ଭୁଣ୍ଡିରୁ କଣ ମିଳବ ? ମୋ ପଦାର୍ଥ ମତେ ଦେଇ ଦଅ—
ବଇ—ହଉ ନେ···ତୋ ପଦାର୍ଥ ନେ ।

[ ଠିକ୍ ଏତକ ବେଳେ ବାହାରୁ ଅଭୟ, ଡାକ୍ତର ଓ ଉପରୁ ପ୍ରକାଶ ଆସିଲେ । ପ୍ରକାଶ—ସୁଦର୍ଶନ ପୁରୁଷ । ବୟସ ୩୨ ରୁ ୩୩ । ମୁହଁରେ ଶିକ୍ଷା ଓ ସଂସ୍କୃତିର ଛାପ ସୁସ୍ପଷ୍ଟ । ଡାକ୍ତର ଓ ଅଭୟ ପ୍ରକାଶର ସମବୟସୀ ବନ୍ଧୁ ]

ଅଭୟ—ନମସ୍କାର ବଇ ମାମୁଁ । ଏ କଣ ଅନାଦ ? ତୋ ଜପାମାଳ କଣ ବଇ ମାମୁଁଙ୍କ ପକେଟରୁ ବାହାରିଲାଣି ?
ବଇ—ସେ ମୋ ଦୁର୍ଭାଗ୍ୟ ।
ଅଭୟ—କାହିଁକ ? କଣ ହେଲ ?
ବଇ—ପିଲ୍ଲ ବୋଲି ସୁଖନ୍ତେ, ତାର ପୁଣି ଏତକ ଗୁଣ ?
ପ୍ରକାଶ—କଏ ବଇ ମାମୁଁ ? ଅଶୋକ ?

ବଇ—ଆଉ କଏ ? କେତେ ଭଲ ପିଲାଟି ପରି ଆସି କହୁଚ—
କେଜେ ମାଳ ଗଡ଼େଇବ ?

ପ୍ରକାଶ—(ହସିହସି) ଯେବେ ତେବେ ଅଶୋକର କାଣ୍ଡ ?

ବଇ—ତମ ସ୍କୁଲର ପାଖରେ ପଡ଼ିଛେ ମୁଁ ଏଣେ ଘରର ତଳେ
ତଳେ ଗଲଣି । ତମେ ପୁଣି ହସୁଚ ?

ଅନାଦି—କୁନବାବୁ ତମକୁ ଝୁଲଟା ଆଣି ଦେଇଛନ୍ତି ବୋଲି ତ
ମୂଳରୁ କହିଥିଲେ ପାଠ ଛୁଟି ଯାଇଥାନ୍ତା ।

ବଇ—ତୁ ଆଉ ବକ୍ ବକ୍ ହନା···ଯା··· (ଅନାଦି ଚାଲିଗଲା)

ଅଭୟ—ବଇ ମାମୁଁଙ୍କୁ ବୋଧହୁଏ ଜାଣନ୍ତି ନାହିଁ ଡାକ୍ତରବାବୁ ।
ବଇ ମାମୁଁ ହେଉଛନ୍ତି ମାଧୁରୀଦେବୀଙ୍କ ସୂର୍ଯ୍ୟ ମାମୁଁ । ଗାଁରେ
ଥାନ୍ତି । ବେଳେ ବେଳେ କଟକ ଆସନ୍ତି । ଅଶୋକ କାହିଁଗଲା
ପ୍ରକାଶ ?

ପ୍ରକାଶ—ଉପରେ ଅଛି ।

ଡାକ୍ତର—ସବୁ ପିଲା ଆସିଛନ୍ତି ତ ?

ପ୍ରକାଶ—ହଁ ତମେମାନେ ବସ । ମୁଁ ସେମାନଙ୍କୁ ଦେଖେ
କେତେଦୂର ଗଲା ।

ଅଭୟ—ଯିବା ଦରକାର ନାହିଁ । ନାଁ-ବାଳକ ପିଲାମାନେ ଯେଉଁ
କାମରେ ହାତ ଦେଇଛନ୍ତି, ସେ କାମ ଉପରେ ଏତେ ତଦା-
ରଖ କରିବା ଉଚିତ ନୁହେଁ ।

ପ୍ରକାଶ—ଏଣେ କିନ୍ତୁ ଡେରି ହୋଇ ଯାଉଛି ଯେ···

ଡାକ୍ତର—( ବଇ ମାମୁଁଙ୍କୁ ) ଆପଣ ସେ କାଠ ଚୌକିଟାରେ
ବସିଛନ୍ତି କାହିଁକି ? ଅସୁବିଧା ହେଉଥିବ, ଚାଇର୍‌କୁ ଉଠି
ଆସନ୍ତୁ ।

ବଇ—ନା, ମୁଁ ଜାଣିଶୁଣି ଏ ଚୌକିରେ ବସିଛି ।

ଅଭୟ—ବଉ ମାମୁଁଙ୍କ ଖିଆପିଆ ବୋଧେ ଶେଷ ହୋଇଗଲାଣି ?
ପ୍ରକାଶ—ହଁ ।
ଅଭୟ—ତାଇ ସାଙ୍ଗ କାଉଚ୍‌ରେ ବସିଲେ କାଳେ ନିଦ ଆସିଯିବ, ସେଥିପାଇଁ କାଣିଶୁଣି କାଷ୍ଟାସନରେ ବସିଛନ୍ତି ?
ବଉ—ଠିକ୍ ! କିନ୍ତୁ ନାବାଳକ ପିଲାମାନଙ୍କ କଥା ଆପଣ କଣ କହୁଥିଲେ ?
ଅଭୟ—ଅଶୋକର ସାଙ୍ଗ ସାଥୀ । ସେଇମାନଙ୍କ କଥା ମୁଁ କହୁଛି ।
ବଉ—ଅଶୋକକୁ ଆଜି ସାତ ପୂରି ଆଠ ଚାଲିଲା । ତାର ସାଙ୍ଗ ସାଥୀମାନେ ନାବାଳକ ହେବେ ହିଁ ହେବେ । ଏଥିରେ ଆଉ ନୂଆ କଥା କଣ ?
ଅଭୟ—ନୂଆ କଥା ବୋଲି କହିଲି କିଏ ?
ବଉ—ଆଉ କଣ ଆପଣ କହିଲେ ?
ଅଭୟ—ଆପଣ ବୋଧେ ଜାଣନ୍ତି ନାହିଁ ବଉ ମାମୁଁ, ଆଜିକା ଆୟୋଜନରେ କେବଳ ପିଲାମାନେ ହିଁ ଭାଗ ନେବେ ।
ବଉ—ଅର୍ଥାତ୍ ?
ଅଭୟ—ଅର୍ଥାତ୍ ଛୋଟ ଛୋଟ ପିଲାମାନେ ନୃତ୍ୟ ଗୀତରେ ସେମାନଙ୍କର କାହାଦୁଷ୍ଟ ଆପଣଙ୍କୁ ଦେଖେଇବେ—
ବଉ—ଏ କଥା ସତ ପ୍ରକାଶ ବାବୁ ?
ପ୍ରକାଶ—ସତ ! ଅଶୋକର ଜନ୍ମ ଦିନରେ ନାଚ ଗୀତର କଥା ଯେତେବେଳେ ଉଠିଲା, ଅଶୋକ କହିଲା, ଯେ ତାର ବନ୍ଧୁମାନଙ୍କ ଉପରେ ସେ ଭାରଟା ଛାଡ଼ି ଦିଆଯାଉ ।
ବଉ—ଅତଏବ ତାର କଥାରେ ତମେ ଛାଡ଼ିଦେଲ ?
ପ୍ରକାଶ—ହଁ । ସେଇ ବ୍ୟବସ୍ଥା ତ ହେଇଚି ।

ବଇ—ତାହେଲେ ସାଧୁଦାସେ ଆଜ ଏଠି ଗୀତ ଗାଇବେ ନାହିଁ ?

ଅଭୟ—ନାଁ ।

ଡାକ୍ତର—ସାଧୁଦାସ ?

ଅଭୟ—ସେ ଜଣେ ଗାୟକ !

ବଇ—ଦାସେ କାହାନ୍ତି ?

ପ୍ରକାଶ—ସେ ତ ଅନେକ ଆଗରୁ ଖାଇ ପିଇ ଚାଲି ଯାଇଚନ୍ତି—

ବଇ—ତା'ହେଲେ ଅନେକ ଆଗରୁ ଏ କଥାଟା ମୋତେ ଜଣେଇବା ଉଚିତ୍ ଥିଲା··· ।

ଡାକ୍ତର—କିନ୍ତୁ ଆପଣଙ୍କର ଅସୁବିଧା କଣ ହେଉଚି ?

ବଇ—ଗଲାଥର ଅଶୋକର ଏଇ ଜନ୍ମ ଦିନକୁ ସାଧୁଦାସେ ଏଠି ସଙ୍ଗୀତ ଶୁଣେଇଥିଲେ ନାଁ ?

ପ୍ରକାଶ—ହଁ ।

ବଇ—ତାଙ୍କ ଗୀତ ଶୁଣି ରାସ୍ତାର ଲୋକେ ବି ଅଟକି ଯାଉଥିଲେ । ଏଥର ସେ ବ୍ୟବସ୍ଥା ବନ୍ଦ ହେଲା କାହିଁକି ?

ଅଭୟ—ଗଲାଥର ଅଶୋକକୁ ଛ ପୂରି ସାତ ଚାଲିଥିଲା—ଏଥର ତାକୁ ସାତ ପୂରି ଆଠ ଚାଲିଲା ।

ବଇ—ତାର ମର୍ମ ?

ଅଭୟ—ନାଁ···ମୁଁ କହୁଛି···ଗଲା କଥା ଆପଣ ଭାବୁଛନ୍ତି କାହିଁକି ? ଗଲା ବର୍ଷ ଯେଉଁ ସମୟରେ ମରୁଡ଼ିର ଆଶଙ୍କା ହେଉଥିଲା, ଏ ବର୍ଷ ସେଇ ସମୟରେ ବନ୍ୟାର ଆଶଙ୍କା ଦେଖା ଦେଇଛି ।

ବଇ—ତା ଅର୍ଥ ଯଦି ନୁହେଁ ଯେ ସାଧୁଦାସଙ୍କ ପରି ଜଣେ କଳାକାରଙ୍କୁ ବାଦ୍ ଦେଇ ପଞ୍ଚାଏ ନାବାଳକ ପିଲାଙ୍କୁ ନେଇ ଆଜି ଏଠି ନଚେଇବେ ।

ଅଭୟ—ସାରା ଦେଶର ଦୃଷ୍ଟି ଆଜ ପିଲମାନଙ୍କ ଉପରେ ପଡ଼ିଛି । ଆପଣ ସେମାନଙ୍କ ଉପରେ ଏତେ ନିର୍ଦ୍ଦୟ କାହିଁକି ?

ବଇ—ଆଚ୍ଛା···ଆପଣ ନିଜେ ଏ ବ୍ୟବସ୍ଥାକୁ ପସନ୍ଦ କରନ୍ତି ?

ଡାକ୍ତର—ଆପଣ ମୋ କଥା ବିଶ୍ୱାସ କରନ୍ତୁ—ଶ୍ରେଷ୍ଠ ପିଲମାନଙ୍କ ନାଚ ଗୀତ ଦେଖି ଆପଣ ନିଶ୍ଚୟ ମୁଗ୍‌ଧ ହେବେ । ମୁଁ ସେମାନଙ୍କ ରିହର୍‌ସାଲ୍ ଦେଖିଛି ।

ବଇ—କ୍ଷମା କରନ୍ତୁ ଆଜ୍ଞା, ମୁଁ ସେ ପଥର ପଥିକ ନୁହେଁ ।

ବିକାଶ—ବଇମାମୁଁ ବୋଧେ ଜାଣନ୍ତି ନାହିଁ ଏ ବ୍ୟବସ୍ଥା ମୂଳରେ ଅଛି କିଏ ?

ବଇ—କିଏ ?

ବିକାଶ—ନିଜେ ମାୟା ।

ବଇ—ମାୟାରାଣୀ ! ! ମାୟାରାଣୀ ଏ ବ୍ୟବସ୍ଥା କରେଇଛି ?

[ ମାୟା ଉପରୁ ଆସିଲା । ମାୟା ବିକାଶର ସ୍ତ୍ରୀ—ସୁଶ୍ରୀ—ଶିକ୍ଷିତା—ବୟସ ୨୭—୨୮ ]

ମାୟା—ଏ କଣ ବଇ ମାମୁଁ—ତମେ ବାହାରିଲଣି ଯେ ? ପିଲମାନଙ୍କ ନାଚ ଗୀତ ଦେଖିବ ନାହିଁ ? ମୁଁ କେବଳ ସେଇଥି ପାଇଁ ତମକୁ ଅଟକେଇଛି ।

ବଇ—ଏ ବ୍ୟବସ୍ଥା ତୁ କରେଇଚୁ ମା ?

ମାୟା—ହଁ ।

ବଇ—ତୁ ନିଜେ ?

ମାୟା—କହିଲି ପରା—ତମେ ଅବିଶ୍ୱାସ କରୁଛ କାହିଁକି ?··· ବସ ।

ବଇ—ଆ···ଚ୍ଛା ! ( ଯେପରି ବାଧ୍ୟ ହୋଇ ବସିଲେ )

ମାୟା—ଅଶୋକ···ଅଶୋକ···

ଅଶୋକ—ସାଲୁଟ ( ଅଶୋକ ଓ ଅନ୍ୟମାନେ ଉପରକୁ ଆସିଲେ )

ଅଭୟ—ତମେ ସବୁ ପ୍ରସ୍ତୁତ ଅଶୋକ ?

ଅଶୋକ—ହଁ...

ଅଭୟ—ଆଚ୍ଛା ଅଶୋକ, ଏଥର ଆରମ୍ଭ କର । ( ନାଚ ଗୀତ ଆରମ୍ଭ ହେଲା )

—ଗୀତ—

( ନାଟକର ଶେଷ ପୃଷ୍ଠାରେ ଦେଖନ୍ତୁ )

[ନାଚଗୀତ ଶେଷ ହେଲା ପରେ ଅଶୋକ ମୁହଁ ଶୁଖାଇ ମାୟା ପାଖରେ ଯାଇ ଠିଆ ହେଲା । ଅନ୍ୟମାନଙ୍କ ସହିତ ଘରର ଲୋକର ପୁଅଝିଅମାନେ ମଧ୍ୟ ଏ ଦୃଶ୍ୟ ଉପଭୋଗ କରୁଥିଲେ । ]

ମାୟା—ଅଶୋକ ! କଣ ହେଲା ତୋର ? କ'ଣ ଭାବୁଚୁ ? ତମର ଜହ୍ନମାମୁଁ ଖେଳଟା କରୁ ନା ?

ଅଶୋକ—ଜହ୍ନମାମୁଁ ଖେଳ କରିବୁ ଯେ, ଜହ୍ନ କାହିଁ ?

କଇ—ଜହ୍ନ ? ଜହ୍ନ ଆକାଶରେ ।

ଅଶୋକ—ଆକାଶ ! ଆକାଶ କାହିଁ ? ଉପରେ ତ ଛାତ, ଏ ଘରେ ତ ଜହ୍ନ ଆଲୁଅ ପଡ଼ନ୍ତି ?

ଅନାଦି—କୁନବାବୁ, ଜହ୍ନ ଆଲୁଅ ପଡ଼ିଚି ଅଗଣାରେ, ଛାତ ଉପରେ ।

ଅଶୋକ—ଠିକ୍‌ରେ, ଛାତ ଉପରେ ତ ଜହ୍ନ ଆଲୁଅ, ସମସ୍ତେ ଛାତ ଉପରକୁ ଆସ · ·

[ଅଶୋକ ସହିତ ସବୁ ପିଲା ଉପରକୁ ଉଠିଗଲେ]

ମାୟା—ଅଶୋକ ! ଅଶୋକ ! ( ଡାକି ଡାକି ସେମାନଙ୍କୁ ଅନୁସରଣ କଲା )

ପ୍ରକାଶ—ମୁଁ ଯାଏ ଅଭୟ, ସେମାନଙ୍କୁ ଡାକି ଆଣେ ।

ଅଭୟ—କାହିଁକି ? ଡାକିବା ଆଉ ଦରକାର କଣ ?

ପ୍ରକାଶ—ଏଇ ଜହ୍ନମାମୁଁ ବର୍ଷପୂର୍ବରେ ଘର ସୁନ୍ଦର ଗୋଟିଏ ନାଚ ଗୀତ ସେମାନେ ଶିଖିଥିଲେ । ଟିକିଏ ଅପେକ୍ଷା କର, ମୁଁ ଆସୁଛି । (ପ୍ରସ୍ଥାନ)

ବଇ—ବାସ୍, ଗୋଟି ଗୋଟିକର ସମସ୍ତେ ଗଛ ଉପରକୁ ଚାଲିଲେ ।

ଅଭୟ—ଆପଣ ବି କଣ ଗଛ ଉପରକୁ ଯିବେ ?

ବଇ—ସାଧୁବାସେ ଯଦି ଯୋଉଥାନ୍ତେ, ବି ମଙ୍ଗଳ କଣ—ସାତ ମଙ୍ଗଳ ଗଛ ଉପରକୁ ଯିବାରେ ମୋର ଆପତ୍ତି ନ ଥିଲା । କିନ୍ତୁ ଏ ଷ୍ଟେଜରେ ଜୋଳ ଗଛ ଉପରେ ବସି ଚନ୍ଦ୍ର ଦର୍ଶନ କରିବାର ଆକାଙ୍କ୍ଷା ମୋର ନାହିଁ ।

ଠାକୁର—ଆପଣ ଯାଉଛନ୍ତି ?

ବଇ—ଆଜ୍ଞା ।

ଠାକୁର—ପ୍ରକାଶ ବାବୁ ଆସିବା ଯାଏ ଅପେକ୍ଷା କରନ୍ତୁ—

ବଇ—ଦରକାର କଣ ? ଅଶୋକକୁ ତ ଆଶୀର୍ବାଦ କରି ସାରିଛି । ତା' ଛଡ଼ା ଇଏ ତ ମୋ ନିଜ ଘର ଭଳି । ଆଉ ଅପେକ୍ଷା ନ କରି ଚାଲିଯିବା ବରଂ ଭଲ ।

ଅଭୟ—ହଁ, ଯଦି ଯିବାର କଥା ବର୍ତ୍ତମାନ ଚାଲିଯିବା ଉଚିତ । ମାଧ୍ୱୀଦେବୀ ଆସିଲେ ହୁଏତ ଅସୁବିଧା ହୋଇପାରେ ।

ବଇ—ଯା କହୁଛନ୍ତି । ମୁଁ ଆସୁଛି ଆଜ୍ଞା । (ସେ ଯିବା ପରେ ପ୍ରକାଶର ପ୍ରବେଶ)

ପ୍ରକାଶ—ନା ଭାଇ, ଅଶୋକ ଆସିଲା ନାହିଁ ।

ଅଭୟ—ତାକୁ ଆସିବା ପାଇଁ କଏ କହୁଛି ?

ଡାକ୍ତର — ସତରେ ବିକାଶ ବାବୁ, ଏ କଥା ତମେ ବୁଝୁନ କାହିଁକି ଯେ, ପିଲମାନେ ଏତେ ଖୁସିହେବା ମୂଳରେ ଗୋଟିଏ ଚମତ୍କାର ଦର୍ଶନ ରହିଛି । ଯେଉଁ ଜହ୍ନମାମୁଁ ପାଇଁ ତାଙ୍କର ଏତେ ଆୟୋଜନ—ଏଇ ଦୁଇ ଶହ ପାୱାର ଇଲେକ୍‌ଟ୍ରିକ୍ ବଲବ୍‌ର ଆଲୁଅ ଦେଖି ତାକୁ କଣ ସେମାନେ ଭୁଲି ଯାଇ ପାରିବେ ?

(କଥା କହୁ କହୁ ମାୟା ସିଡ଼ିରୁ ଓହ୍ଲେଇଲା)

ମାୟା — କିନ୍ତୁ ଜହ୍ନ କାହିଁ ? ହଠାତ୍ ଗୋଟିଏ ବିରାଟ କଳା ବଉଦ ଜହ୍ନ ଉପରେ ଢାଙ୍କି ହୋଇ ଗଲାଣି । ଅଶୋକ କିନ୍ତୁ ଛାତ ଉପରେ ଜିଦ୍ ଧରି ବସିଛି — ମେଘ କଟିବ, ଜହ୍ନ ଉଇଁବ — ତା ପରେ ଜହ୍ନ ମାମୁଁଙ୍କୁ ସେମାନେ ତାଙ୍କର ସମସ୍ତ କଥା ଶୁଣାଇ ଛାତ ଉପରୁ ଆସିବେ ।

ଅଭୟ — ଆପଣ ଦର୍ଶନର କଥା କହୁଥିଲେ ନା ଡାକ୍ତର ବାବୁ ? ମାୟାଦେବୀଙ୍କ କଥା ଶୁଣି ମୁଁ ସେଥିରୁ କବିତ୍ୱର ଆଭାସ ପାଇଲିଣି । ମୁଁ କହୁଛି ଚାଲନ୍ତୁ, ଆମେ ବି ଛାତ ଉପରକୁ ଯିବା ।

ବିକାଶ — କାହିଁକି ?

ଅଭୟ — ଜିଦ୍‌ଖୋର ଅଶୋକର ବାଲ୍ୟ ଦର୍ଶନ—ବୋଧ ସହିତ କବିତ୍ୱର ଯେଉଁ ମଧୁର ମିଳନ ହୋଇଛି — ତାର ରସ ଉପଲବ୍‌ଧି କରିବା ପାଇଁ ।

ମାୟା — ମାଫ୍ କରନ୍ତୁ ଅଭୟ ବାବୁ — ଆଉ ବେଳ ନାହିଁ । ଆପଣମାନେ ଖାଇବେ ଆସନ୍ତୁ ।

ଡାକ୍ତର—ପିଲମାନେ ?

ବିକାଶ — ତାଙ୍କର ତ ସନ୍ଧ୍ୟାବେଳୁ ସରିଲାଣି ।

ମାୟା—ଆସନ୍ତୁ ।

(ସମସ୍ତେ ଭିତରକୁ ଗଲେ । ବଇ ମାମୁଁ ଫେରି ଆସିଲେ । ତାଙ୍କୁ ଦେଖି ଅନାଦ ଭିତରୁ ଟିକଏ ପରେ ଆସିଲା । କିନ୍ତୁ ଫୁଲମାଳୀ ଘଟଣା ଯୋଗୁଁ ସେମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ କଥାବାର୍ତ୍ତା ନ ହୋଇ ପରୋକ୍ଷରେ କଥାବାର୍ତ୍ତା ଚାଲିଲା)

ବଇ – କେଡ଼େ ଜୋରରେ ମେଘଟା ଉଠାଇ ଆସିଲାଣି । ଛତାଟା ନ ହେଲେ ଯିବ କେମିତି ?

ଅନାଦ – ଏଠିକି ଆସିଲା ବେଳେ ତ କେହି ଛତା ଆଣି ନ ଥିଲେ ?

ବଇ – ଉତ୍ତରା ପବନଟା ପୁଣି ହେଲାଣି । କିଏ ଏବେ ଜାଣିଥିଲା ଏମିତି ଅଦିନଆ ମେଘଟା ମାଡ଼ି ଆସିବ !

ଅନାଦ – କୁନବାବୁ ଛାତ ଉପରକୁ ଯାଇଛନ୍ତି । ମୁଁ ଯାଏଁ । ଆଜି କାଲି ମେଘର ପୁଣି ଦିନ କ'ଣ ଅଦିନ କ'ଣ ? ଅଚ୍ଛୁ ଅଚ୍ଛୁ ହୁ କିନା ମାଡ଼ି ଆସୁଚି ।

ବଇ – ବର୍ଷିଲା ନାଁ କଣ···ଏ ଘରେ କଣ କାହାରି ଛତା ନାହିଁ –

ଅନାଦ—ମେଘ ଦିନ ତ ମାଡ଼ି ଆସିଲାଣି···ବାବୁଙ୍କର ଆମର ବର୍ଷକୁ ତିନଟା ହଜେ···ତାଙ୍କର ବର୍ଷାତି ଭଲ କି ଯିଏ ଭଲ । ଆଜି ମୋର ତ ଖଣ୍ଡେ ତାଳପକା ଛତା ।

[ ବଇ ମାମୁଁ ଆଉ ନିଜକୁ ସମ୍ଭାଳି ରଖି ପାରିଲେ ନାହିଁ ]

ବଇ—ଆଚ୍ଛା ଅନାଦ ।

ଅନାଦ—ଆଜ୍ଞା ।

ବଇ—ତୋର ତାଳପକା ଛତା ବୋଲି ମୁଁ କଣ ନବାକୁ ମନାକଲି ?

ଅନାଦ—ମୁଁ କଣ ଦବାକୁ ମନାକଲି ? ( ଦୁହେଁ ହସି ଉଠିଲେ )

ବଇ—ଓହୋ ! ଦୁଧଖିଆ ଛୁଆଟା ପାଇଁ ତୋ ମୁହଁ ତେଣିକି ମୋ ମୁହଁ ଏଣିକି ।

ଅନାଦି—ହେଲେ ଦେଖିଲ ତ ଜଇବାବୁ! ଝିଅ ଠିକଣର କି ବୁଦ୍ଧି? କେମିତିଆ ନାଚ ନଚେଇ ଦେଲା?

ଜଇ—ଏ ବୁଦ୍ଧି ଖାଲି ତା'ର ନିଜୁରୁଚି ନାଁ ବାପ ମା'ଙ୍କର ଚେଷ୍ଟା ପଢିଆରୁ।

ଅନାଦି—କି କଥା କହୁଚ ଜଇବାବୁ, ଘର ଗୋଟାକରେ ଝିଅଟେବାକି ବଳକଟେ। ତାହା ମା ଚେଷ୍ଟା କରିବେ କାହିଁ?

ଜଇ—ଦ୍ୱାପରରେ ନନ୍ଦ ଯଶୋଦା ତ କୃଷ୍ଣଚନ୍ଦ୍ରଙ୍କୁ ଏମିତି ଅଳିଅଳରେ ବଢେଇ ନ ଥିବେ। ଆମ ମାୟାରାଣୀ ତ ଦୁନିଆରୁ ଉଣ୍ଡି ପାଇଚି।

ଅନାଦି—ମା ଏକା ତମକୁ ଖରି ମାନନ୍ତି ଜଇବାବୁ।

ଜଇ—ମୁଁ କି ସେମିତି। ମୋ ଝିଅ—ଝିଆଣିକୁ ନ ପଚେଇ ତା ଦୁଆରେ ଆସି ଠିଆ ହୁଏ। ହେଲେ ଦେଖିଚ, ଏ କଥାରେ ପଦେ ଟିକେ ତାକୁ କହିଚି? କାହିଁକି କହିବି? ଏ ଉମିତି ଚାଲିଥାଉ। ଠାକୁରେ କରନ୍ତୁ ସବୁଦିନେ ହସ ଖୁସିରେ ତାଙ୍କର ଦିନ କଟୁ। ହଁ ଅନାଦି, ଛତାଟା ଦେଲୁ ବାପା—

ଅନାଦି—ହଉ ଆଣୁଚି ଆଜ୍ଞା…

ଜଇ—ମତେ ପୁଣି ଦି ପା' ବାଟ ଚାଲି ଯିବାକୁ ହେବ।

[ କିଛିଏ ପରେ ଅନାଦି ଛତା ଆଣି ଦେଲା। ]

ଜଇ—ହଉ ମୁଁ ଯାଉଚି—ମାୟାରାଣୀକୁ କହିଦେବୁ।

[ ଜଇମାମୁଁ ଚାଲିଯିବା ପରେ ମାୟା ଓ ଅନ୍ୟମାନେ ଭିତରୁ ଆସିଲେ। ]

ମାୟା—ପିଲାଏ ଗୁଡ଼ ଉପରୁ ଆସି ନାହାନ୍ତି ଅନାଦି?

ଅନାଦି—କାହିଁ…ନାହିଁ ତ…

ମାୟା—ଏ, ବର୍ଷା ଆସିଗଲାଣି ନା' କଣ—ସେମାନେ ଛାତ ଉପରେ ଅଛନ୍ତି । ତୁ ଆସିଲୁ ।

[ କ୍ଷିପ୍ର ଗତିରେ ମାୟା ଉପରକୁ ଗଲା । ପଛେ ପଛେ ଅନାଦି ମଧ୍ୟ ଗଲା । ]

ଅଭୟ—ହଁ ବିକାଶ—ଆମକୁ ବିଦାୟ ଦେ ।

ବିକାଶ—ବର୍ଷା ଆସିଗଲାଣି ଯେ—

ଅଭୟ—ଡାକ୍ତର ବାବୁଙ୍କ ଗାଡ଼ି ଅଛି । ଅସୁବିଧା କିଛି ହେବ ନାହିଁ । ପିଲାମାନେ କୁଆଡ଼େ ଗଲେ ?···ଏଇ ତ, ସମସ୍ତେ ଆସିଲେଣି ।

[ ଅଶୋକ ବ୍ୟତୀତ ଅନ୍ୟ ପିଲାମାନଙ୍କୁ ନେଇ ଅନାଦି ଆସିଲା । ]

ଡାକ୍ତର—ବର୍ଷା ତ ହେଲାଣି—ପିଲାମାନଙ୍କୁ ମୁଁ ଗାଡ଼ିରେ ନେଇ ଯାଉଛି ।

ବିକାଶ—ଆପଣ ନେବେ ?

ଅଭୟ—ହଁ, ସେମାନେ ଆମ ସାଥିରେ ଚାଲନ୍ତୁ ।

ବିକାଶ—ଅଶୋକ କାହିଁଗଲା ଅନାଦି ?

ଅନାଦି—ସାନ ବାବୁ ବର୍ଷାରେ ଗୋଟିପଣେ ଭିଜୁଛନ୍ତି ।

ବିକାଶ—ଭିଜୁଛି···? କାହିଁକି ?

ଅନାଦି—ଛାତ ଉପରେ ବସି ଚିନ୍ତା କରୁଛନ୍ତି—ବର୍ଷା ପାଣିରେ ଭିଜିବାକୁ ମତେ ଭଲ ଲାଗୁଛି···

ବିକାଶ—ମା କାହାନ୍ତି ?

ଅନାଦି— ସେ ବି ଛାତ ଉପରେ ଥିଲେ··· ।

ଅଭୟ—ସେ ବି କଣ ଭିଜୁଥିଲେ···?

ଅନାଦ—ନା, ସାନବାବୁ ଗୋଡ଼ରୁ ମୁଣ୍ଡଯାଏ ଗୋଟିପଣ ଭିଜିଚନ୍ତି । ମା ଏଇନେ ତାଙ୍କୁ ନେଇ ଶୋଇବା ଘରକୁ ଗଲେ ।

ଅଭୟ—ଶୋଇବାକୁ ଗଲେଣି ତ ? ଭଲକଥା । ଆମେ ମଧ୍ୟ ଯାଉଚୁ ।

[ ଡାକ୍ତର, ଅଭୟ ଓ ପିଲାମାନେ ବିଦାୟ ନେଲେ । ବିକାଶ ମଧ୍ୟ ସେମାନଙ୍କ ସହିତ ଗଲ—ସେମାନେ ଯିବା ପରେ ପରେ ମାୟା ଉପରୁ ଆସିଲା । ଟିକଏ ପରେ ବିକାଶ ଫେରିଲା । ]

ମାୟା—ସେମାନେ ଗଲେଣି ?

ବିକାଶ—ହିଁ, ଏଇ ତ ଗଲେ । ଅଶୋକ ଶୋଇବାକୁ ଗଲା ?

ମାୟା—ହିଁ ।

ବିକାଶ—ବର୍ଷାରେ ଖୁବ୍ ଭିଜିଚି ?

ମାୟା—ହିଁ, ଜାମା ଭିଜିବା ଯାଏ । ମୁଁ ତା ଦେହ ହାତ ପୋଛି ଗରମ ଜାମା ପଟା ପିନ୍ଧାଇ ଶୁଆଇ ଦେଇ ଆସିଚି—

ବିକାଶ—ହଠାତ୍ ବର୍ଷା ପ୍ରତି ତା'ର ମମତା ବଢ଼ିଲା କାହିଁକି ?

ମାୟା—ମୁଁ ଜାଣିଚି ? ବର୍ଷା ଯେମିତି ଆସିଚି— କହିଲା—ବୋଉ —ଆଈ କହୁଥିଲା, ଝମ୍ ଝମ୍ ବର୍ଷାରେ ଭିଜିଲେ ଦେହ ଟାଣ ହୁଏ—ମୁଁ ଭିଜିବି ।

ବିକାଶ—ସେଇଠୁ ?

ମାୟା—ସେଇଠୁ ଆଉ କଣ ? ମୁଁ ନାହିଁ କଲି—ସେ କାନ୍ଦିଲା ।

ବିକାଶ—ତା' ପରେ ତମେ ହିଁ କଲ—ସେ ଭିଜିଲା ।

ମାୟା—ସତେ ?

[ ଅଭିମାନ କରି ପୁଣି ଉପରକୁ ଚାଲି ଯାଉଥିଲା । ]

ବିକାଶ—ମାୟା ।

ମାୟା—କଣ କହୁଚ ?

ପ୍ରକାଶ—ଏଆଡ଼କୁ ଆସ, କଥା ଅଛି ।

[ ଏକ ପ୍ରକାର ଜୋର୍ କରି ମାୟାକୁ ଫେରାଇ ଆଣିଲା । ]

ମାୟା—କଥା ମାନେ ଏଇ ହସ ଆଉ ପରିହାସ ତ ?

ପ୍ରକାଶ—ଆଚ୍ଛା ମାୟା, ପରିହାସ ଯଦି ମୁଁ କରିଥାଏ, କାହା ପାଖରେ କରୁଚି ?

ମାୟା—ଏତେ କଥା ମୁଁ ଜାଣିନି ବାବୁ—କୁହ କଣ କହୁଚ ।

ପ୍ରକାଶ—ଗୋଟାଏ କଥାରେ ମୋର ଘରି ଦୁଃଖ ଭାଙ୍ଗି ଯାଉଚି ।

ମାୟା—କଣ ?

ପ୍ରକାଶ—ଯେପରି ମୁଁ ଅଶୋକକୁ ଖୁବ୍···ମାନେ···ଯାହାକୁ କହନ୍ତି···

ମାୟା—ବୁଝିଲି···ପ୍ରାଣ ଦେଇ ନିବିଡ଼ ଭାବରେ ଭଲ ପାଇ ପାରୁନ···

ପ୍ରକାଶ—ସତରେ ମାୟା, ସବୁବେଳେ ତମେ ଯେମିତି ମତେ ଚିପି ଯାଉଚ ।

ମାୟା—ସେଇଟା କାହାରି ଦୋଷ ନୁହେଁ ।

ପ୍ରକାଶ—ମାନେ ?

ମାୟା—ସେଇଟା ହଉଚି କଳ୍ପ କଳା ମା'ର ଗୁଣ ।

ପ୍ରକାଶ—କିନ୍ତୁ ମାୟା, ମୋର ଆଶଙ୍କା ହଉଚି, ଅଶୋକ ପାଇଁ-ଦିନେ ହୁଏତ ତମେ ପାଗଳ ହେଇଯିବ ।

ମାୟା—ଗଲେ ଯିବ ।

ପ୍ରକାଶ—କିନ୍ତୁ ମୋ ଅବସ୍ଥା କଣ ହେବ ? ମୁଁ ପୁଣି ଯିବି କୁଆଡ଼େ ?

ମାୟା—ଦଶ ବର୍ଷ ପୂର୍ବେ ଏ ପିଲାମି—ଏ ଚପଳତା ଶୋଭା ପାଉଥିଲା, ଆଜି ନୁହେଁ । ମୁଁ ଯାଉଚି···

ବିକାଶ—ମୋର ଗୋଟିଏ କଥାର ଉତ୍ତର ଦେଇ ଯାଅ ।
ମାୟା—କଣ ?
ବିକାଶ—ଆଜି ଦିନଟା ଆମ ଜୀବନରେ ଖୁବ୍ ବଡ଼—ନୁହେଁ ?
ମାୟା—ଏ କଥା କହିବା ମାନେ ?
ବିକାଶ—କିନ୍ତୁ କାହିଁକି ବଡ଼ ?
ମାୟା—ମୁଁ କେବେ ପାଗଳ ହୋଇଯିବି—ଏଇ ଦୁଃଖରେ ବୋଧହୁଏ ଆଜିଠୁଁ ତମର ପାଗଳାମି ଆରମ୍ଭ ହୋଇଗଲାଣି ।
ବିକାଶ—ଆଦୌ ନୁହେଁ ।
ମାୟା—ଆଦୌ ନୁହେଁ ତ, ଅଶୋକର ଜନ୍ମ ଦିନରେ ଏ ପ୍ରଶ୍ନ ପଚାରୁଛ କେମିତି ?
ବିକାଶ—ଆଜିକା ଦିନପାଞ୍ଜି ତମେ ଜାଣ ?
ମାୟା—ଜାଣେ, ଆଜି ନକ୍ଷତ୍ର ହେଉଚି ଉତ୍ତର ଫାଲ୍‌ଗୁନୀ ସିଂହ, ଅଶୋକର ଜନ୍ମ ନକ୍ଷତ୍ର—ପୂର୍ବ ଷାଠିଏ ଦଣ୍ଡ ।
ବିକାଶ—ତିଥି ?
ମାୟା—ତିଥି !! ତିଥି (ଭାବି) ନବମୀ ନା ଦଶମୀ ?
ବିକାଶ—ଶୁକ୍ଳ ଦଶମୀ—
ମାୟା—ହଁ, ହଁ, ଶୁକ୍ଳ ଦଶମୀ । କିନ୍ତୁ ବଡ଼ ମାମୁଁ ତ କହୁଥିଲେ ଜନ୍ମ ନକ୍ଷତ୍ର ସହିତ ତିଥିର କୌଣସି ସମ୍ପର୍କ ନ ଥାଏ ।
ବିକାଶ—ସେଇଥିପାଇଁ ତମେ ନକ୍ଷତ୍ର ମନେ ରଖି ତିଥିକୁ ଭୁଲି ଯାଇଚ ?
ମାୟା—କିନ୍ତୁ ତମେ ମନେ ରଖିଚ କାହିଁକି ?
ବିକାଶ—ଏ ଦିନଟାକୁ ସହଜରେ ଭୁଲିବାର ନୁହେଁ ବୋଲି—
ମାୟା—କଣ ତମେ କହୁଚ ମୁଁ ବୁଝି ପାରୁନି ।
ବିକାଶ—ବୁଝି ପାରୁନ ? ଆଚ୍ଛା···

( ଡ୍ର ଭିତରୁ ଗୋଟିଏ ନିମନ୍ତ୍ରଣ ପତ୍ର ବାହାର କରି ପଢିଲା) "ମହାଶୟ, ଚଳିତ ଶୁକ୍ଳ ଦଶମୀ ଜ୍ୟେଷ୍ଠ ସତର ଦିନ ମୋର କନ୍ୟା ଆୟୁଷ୍ମତୀ ମାୟାରାଣୀର…"

ମାୟା—କୋଉ ମାୟା ?

ପ୍ରକାଶ—(ପତ୍ରଟା ମାୟା ହାତକୁ ଦେଇ) ଅଶୋକର ମା' ।

ମାୟା—(ପତ୍ରଟା ଉପରେ ଆଖି ବୁଲେଇ) ଆଜି ?

ପ୍ରକାଶ—ହଁ ମାୟା—ଆଜିକୁ ଦଶ ବର୍ଷ ପୂର୍ବେ, ଠିକ୍ ଏଇ ଦିନରେ ଆମର ବିବାହ ହୋଇଥିଲା—

ମାୟା—ଆଜି !! ( ପ୍ରଣାମ କଲା ବେଳେ ପ୍ରକାଶ ବାଧା ଦେଲା)

ପ୍ରକାଶ—ଆରେ ! ଏ କ'ଣ କରୁଚ ? ଏକାବେଳକେ ମଥା ପାତି ପ୍ରଣାମ !

ମାୟା—ମତେ ତମେ କ୍ଷମା କର ।

ପ୍ରକାଶ—କଣ କ୍ଷମା କରିବି ?

ମାୟା—ଆହୁରି ଆଗରୁ ମତେ ଏ କଥା ଜଣାଇଥିଲେ କ'ଣ କ୍ଷତି ହୋଇଥାନ୍ତା ?

ପ୍ରକାଶ—ଜଣେଇଥାନ୍ତି କାହିଁକି ?

ମାୟା—ସତରେ—ଅଶୋକ ପାଇଁ ମୁଁ ସବୁ କିଛି ଭୁଲି ଯାଇଚି ।

ପ୍ରକାଶ—ଏ ଭୁଲିଯିବାରେ ବି ଯେମିତି ଗୋଟାଏ ମାଦକତା ରହିଚି । ଆଜିକୁ ଆଠ ବର୍ଷ ହୋଇଗଲା ଆମର ଏ ସ୍ନେହ ସଂସାରଟି କେବଳ ଅଶୋକମୟ ହୋଇ ରହିଛି । ତୁମେ ଭୁଲିଚ ଯେତିକି—ପାଇଛ ତାଠୁଁ ଅନେକ ବେଶୀ !

ମାୟା—( ହଠାତ୍ ଯେମିତି କଣ ଶୁଣି ପାରି ) ଅଶୋକ ଡାକୁଚି କି ? ( କିଛିଏ ଅପେକ୍ଷା କରି ) ନା !

ବିକାଶ—ଦଶ ବର୍ଷ ପୂର୍ବେ ଯେଉଁ ବାଳକ ବଧୂଟିର ମନ ପ୍ରାଣ କେବଳ ଜଣକର ଡାକ ଶୁଣି ଦୋହଲି ଉଠୁଥିଲା—ଆଜି ସେ ତା'ର ପାଖରେ ବସି, ତାକୁ ଉପେକ୍ଷା କରି, ଶୂନ୍ୟରେ ମା' ଡାକ ଶୁଣି ଚମକି ପଡ଼ୁଛି । ବାସ୍ତବିକ ମାୟା, ତମର ଏ ମାତୃତ୍ୱ ପ୍ରତି ମୋର ହିଂସା ହେଉଛି ।

ମାୟା—କିନ୍ତୁ ଏଇ ଆଠ ବର୍ଷ ଭିତରେ ବୋଧହୁଏ ଆଜି ଏଇ ପ୍ରଥମ ମୁଁ ମା' ଡାକରେ ଭୁଲି ନ ଯାଇ ତମ ପାଖରେ ବସି ରହିଛି ।

ବିକାଶ—ମୋର ଏ ସୌଭାଗ୍ୟରେ ଆଜି ତେବେ ତମର ହିଂସା ହେବା କଥା ମାୟା !

ମାୟା—ସତେ, କି ସୁନ୍ଦର ଯୋଗା-ଯୋଗ କୁହ ତ । ଆଜି ଅଶୋକର ଜନ୍ମଦିନ—ଆଉ ( ଉପରୁ ଅନାଦିର ଡାକ ଶୁଭିଲା )

ଅନାଦି—(ଉପରୁ) ମା···ମା···

ମାୟା—କଣ ହେଇଛି ଅନାଦି ?

ଅନାଦି—କୁନି ବାବୁ ମାଟେ ଖଟରେ ଶୋଉନାହାନ୍ତି ।

ମାୟା—ଆଉ ?

ଅନାଦି—ଗରମ ହଉଛି ବୋଲି ଦିହରୁ ସବୁ ଜାମା କୁର୍ତ୍ତା କାଢ଼ି ଖଟରୁ ଓହ୍ଲେଇ ସେମିତି ତଳଟାରେ ଶୋଇଚନ୍ତି ।

ମାୟା—ଏଁ, ତଳେ ଶୋଇଛି ! (ବିକାଶକୁ) ତମେ ଆସ ତ ଉପରକୁ । (ଅନାଦିକୁ) ତୁ ଯା ଅନାଦି ତମେ ସବୁ ଖିଆପିଆ କର ।

[ ମାୟା ଓ ବିକାଶ ଉପରକୁ ଉଠିଗଲେ । ଅନାଦି ତଳକୁ ଆସି, କଷଟିର ଝରକା ଦରଜା ଆଦି ବନ୍ଦ କରି, ଆଲୁଅ ଲିଭେଇ ଭିତରକୁ ଗଲା ।

ମଞ୍ଚ ଶୂନ୍ୟ । ସମସ୍ତ ଉଦ୍‌ଯାପନ-ଜ୍ଞାପକ ଯନ୍ତ୍ର-ସଙ୍ଗୀତ କିଛି କ୍ଷଣ ଧରି ବାଜି ଉଠିବା ପରେ ପୂର୍ବ ଦିଗରେ ଝରକାର ଉପର-ଭାଗ-ସନ୍ନିବିଷ୍ଟ କାଚ ମଧ୍ୟ ଦେଇ ଉଷାର ପ୍ରଥମ ଆଲୋକ କକ୍ଷ ମଧ୍ୟରେ ପତିତ ହେଲା । ଯନ୍ତ୍ର ସଙ୍ଗୀତ ଉଭେଇ ଯିବା ସଙ୍ଗେ ସଙ୍ଗେ ପ୍ରଭାତର ଆଲୋକ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇ ଉଠିଲା ।

କାନ୍ଧରେ ସ୍କୁଲ-ବ୍ୟାଗ୍ ଝୁଲେଇ ଉପରୁ ଓହ୍ଲାଇ ଆସିଲା ଅଶୋକ । ସେ ଆସି ପୂର୍ବ ଦିଗର ଝରକାଟା ଖୋଲି ଦେଲା । ମଞ୍ଚ ବର୍ତ୍ତମାନ ଆଲୋକମୟ ]

ଅଶୋକ—(ଡାକିଲା)—ଅନାଦି—ଅନାଦି ।

[ ନିଦ ମଳମଳ ଆଖିରେ ଅନାଦି ଭିତରୁ ଉଠି ଆସିଲା ]

ଅନାଦି—ଲୁନିବାବୁ, ଏତେ ଚଞ୍ଚଳ ଆଜି ଉଠିଲଣି ?

ଅଶୋକ—ମୁଁ କିଣ ତୋ' ଭଳି ଗଧ ହେଇଚି !! ଆଜି ପରା ଶନିବାର—ସକାଳ ସ୍କୁଲ୍ ।

ଅନାଦି—ସତେ ତ—ଆଜି ଶନିବାର । ଦାନ୍ତ ଘଷିଲଣି ?

ଅଶୋକ—ହଁ ।

ଅନାଦି—ଜଳଖିଆ—

ଅଶୋକ—ମୁଁ ବିସ୍କୁଟ ଖାଇଚି ।

ଅନାଦି—ମା ଉଠି ନାହାନ୍ତି ?

ଅଶୋକ—ବୋଉ ଶୋଇଅଛି···( ଅଶୋକ ନାକ ସୁଁ ସୁଁ କରୁଥାଏ )

ଅନାଦି—ତମକୁ ସର୍ଦ୍ଦି ହୋଇଛି କି ଲୁନିବାବୁ ?

ଅଶୋକ—ହଁ । ତୁ ସେଦିନ ପିକା ଟାଣୁଥିଲୁ ନା—ସିଧା ହୋଇ-ଥିଲି ବୋଲି ?

ଅନାଦ—ହଁ, ଟେଳପତ୍ର ପିଲା ।

ଅଶୋକ—ସର୍ଦ୍ଦି ଛୁଡ଼ିଗଲା ?

ଅନାଦ— ନବାବ । ଧୂଆଁ ବାଜିଲେ ଆଉ ସର୍ଦ୍ଦି ରହିବ ?

ଅଶୋକ—ତୁ ଏ କେଟ୍‌ଟା ନେଇ ବାହାରେ ବସ । ଗାଡ଼ି ଆସିଲେ ମୋତେ ଡାକିବୁ ।

ଅନାଦ—ହଉ । (ଅନାଦ ବ୍ୟାଗ୍ ନେଇ ବାହାରକୁ ଗଲା । ଅଶୋକ ଏଣିକି ତେଣିକି ଚାହିଁ, ତା ଭିତରୁ ଗୋଟାଏ ସିଗ୍ରେଟ୍ ଟିଣ ଆଣି ସିଗ୍ରେଟ୍ ଖଣ୍ଡେ ଧରେଇଲା । ଉପରୁ ଆସିଲା ପ୍ରକାଶ)

ପ୍ରକାଶ—ଅଶୋକ—

ଅଶୋକ – ଆଜ୍ଞା ।

ପ୍ରକାଶ—ଏ କଣ ? ସିଗାରେଟ୍ ଖିଆ ହେଉଚି । ସିଗାରେଟ କେଉଁଠୁ ଆଣିଲୁ ?

ଅଶୋକ—ଏଇ ଡ୍ରୟରୁ ।

ପ୍ରକାଶ—ପିଲାମାନେ କଅଣ ସିଗାରେଟ୍ ଖାଆନ୍ତି ?

ଅଶୋକ—ମତେ ସର୍ଦ୍ଦି ହୋଇଚି ।

ପ୍ରକାଶ—କିନ୍ତୁ ସିଗାରେଟ୍ ଖିଆ ହେଉଚି କାହିଁକି ?

ଅଶୋକ—ସର୍ଦ୍ଦି ଛୁଡ଼ିଯିବ ।

ପ୍ରକାଶ—କଣ ? ସିଗାରେଟ ଖାଇଲେ ସର୍ଦ୍ଦି ଛୁଡ଼ିଯିବ ?

ଅଶୋକ—ନବାବ୍ । ଧୂଆଁ ବାଜିଲେ ଆଉ ସର୍ଦ୍ଦି ରହିବ ନାହିଁ ।

ପ୍ରକାଶ—(ଜୋରରେ ହସି) ଆଚ୍ଛା, ଆଚ୍ଛା, ଖୁବ୍ ଧୂଆଁ ବାଜିଲାଣି, ସର୍ଦ୍ଦି ନବାବ ଛୁଡ଼ି ଯିବଣି । ସିଗାରେଟ ଫୋପାଡ଼ି ଦେ । ( ଅଶୋକ ସିଗାରେଟ ଫୋପାଡ଼ି ଦେଲା ) ତୋ ବୋଉ ତ ନିଦରୁ ଉଠିନି । ମୁଁ ବି ଉଠି ନ ଥିଲି, ତୁ ଏତେ ସକାଳୁ ଉଠି ଚାଲି ଆସିଲୁ କାହିଁକି ?

ଅଶୋକ—ଆଜ ପରା ଶନିବାର ମର୍ଣ୍ଣିଂ ସ୍କୁଲ ।

ବିକାଶ—ଓ ! ପୂଜାରୀ ଖାଇବାକୁ ଦେଇଚି ?

ଅଶୋକ—ହଁ ! ମୁଁ ଯାଉଚି ବାପା ।

ବିକାଶ—ଏ କଅଣ, ସାର୍ଟ ପିନ୍ଧିନୁ ଯେ ? ସାର୍ଟ କାନ୍ଧ ଉପରେ ପଡ଼ିଚି ।

ଅଶୋକ—ମନେ ନ ଥିଲା ( ସାର୍ଟ ପିନ୍ଧିଲା )

ବିକାଶ—ବାସ୍, ମନ୍ତ୍ରବାଳ ଯାକ ପୁଣି ଅଳିଆ ହେଇ ଗଲାଣି, ଏଣିକି ଆ—

ଅଶୋକ—( ଅନୁଯୋଗ ସ୍ୱରରେ ) ଡେରି ହୋଇ ଯାଉଚି, ଛାଡ଼ ।

ବିକାଶ—ନା, ମୁଁ ଆଜ ତତେ ଛାଡ଼ିବି ନାହିଁ । ( ଅତି ସ୍ନେହରେ ଛାତିରେ ଅଶୋକକୁ ଜାକି ଧରିଲା )

ଅଶୋକ—ମୁଁ ସ୍କୁଲ ଯିବି ଯେ ।

ବିକାଶ—ଦର୍କାର ନାହିଁ, ମୁଁ ତତେ ଏଇଠି ପଢ଼େଇବି ।

ଅଶୋକ—ବାଃରେ, ସାର୍ ମତେ ଗାଳି ଦେବେ—

ବିକାଶ—ଓଃ, ଘରେ ଗାଳି ଦେଲା ବାଲା ।

ଅଶୋକ—ଛାଡ଼ିବ ନାହିଁ ?

ବିକାଶ—ନା !

ଅଶୋକ—ତମେ ଜାଣ ବାପା, ମାମୁଁ ଚିଠି ଦେଇଛନ୍ତି—ମୁଁ ଉନ୍ ମିଲଟାରୀ କଲେଜ୍‌ରେ ପଢ଼ିବି । ମିଲଟାରୀ ଅଫିସର୍ ହେବି । ମୁଁ ତ ଆମ ଡ୍ରିଲ ସାର୍‌ଙ୍କଠାରୁ ବକ୍‌ସିଂ ଶିଖିଲାଣି ।

ବିକାଶ—ସତେ ! ମୁଁ ନ ଛାଡ଼ିଲେ ତୁ ମୋ ସାଙ୍ଗରେ ବକ୍‌ସିଂ ଆରମ୍ଭ କରି ଦେବୁ ।

ଅଶୋକ—ହଁ ।

ବିକାଶ—ଆଚ୍ଛା । ତେବେ ଚଳୁଓ ବକ୍‌ସିଂ—ମୁଁ ଡାଉନ୍ ହେଲେ ତୁ ଏଠୁ ଯିବୁ । [ ଅଶୋକକୁ ଗୋଟାଏ ଚୌକି ଉପରେ ଠିଆ କରେଇ ଦେଇ ତା ଅଣ୍ଟାକୁ ଦୁଇ ହାତରେ ଧରି ରଖିଲା ]

ଅନାଦି—[ ବାହାରୁ ] କୁନବାବୁ, ଗାଡ଼ି ଆସିଲାଣି ।

ଅଶୋକ—ଗାଡ଼ି ଆସିଲାଣି ବାପା, ଛାଡ଼ ମୁଁ ଯିବି । ଛାଡ଼, କହୁଚି ଛାଡ଼ ଛାଡ଼ [ କଥା ସଙ୍ଗେ ସଙ୍ଗେ ବିକାଶ ପିଠିରେ ଅପର୍ଯ୍ୟାପ୍ତ ମୁଥ ବସେଇ ଦେଇଗଲା । ବିକାଶ ହସି ହସି ତଳେ ଲେଟି ପଡ଼ିଲା ]

ଅଶୋକ—[ ଚୌକି ଉପରୁ ଡେଇଁ ପଡ଼ି ] ଡାଉନ୍—ଡାଉନ୍— [ କହି କହି ପଳେଇଲା । ଟିକିଏ ପରେ ସେମିତି ହସି ହସି ବିକାଶ ଉଠିଲା ]

ବିକାଶ—ଅନାଦି, ପୂଜାଘରକୁ କିଛି ଉପରକୁ ଧୂପ ପଠେଇଦବ ।

[ ଅନାଦି ଭିତରକୁ ଗଲା । ବିକାଶ ସିଡ଼ିରେ ଉଠିଲା ବେଳକୁ ଅଭୟ ଆସିଲା ]

ଅଭୟ—ଗୁଁ'ଟା ତଳେ ଝାଇଲେ ବୋଧହୁଏ କିଛି ଅସୁବିଧା ହବନି ।

ବିକାଶ—ଆରେ ଅଭୟ, ଏଡ଼େ ସକାଳୁ ?

ଅଭୟ—ଏତେ ସକାଳୁ ନ ଆସିଥିଲେ ଏଇ ସୋରାବ-ରୁସ୍ତମ ଯୁଦ୍ଧର ଦୃଶ୍ୟଟା ଦେଖିଥାନ୍ତି କେମିତି ?

ବିକାଶ—ତୁ ତେବେ ସବୁ ଦେଖିଚୁ ?

ଅଭୟ—ହଁ ଖାଲି ଦେଖିନାହିଁ, ପର୍ଦା ସେ ପାଖେ ଠିଆ ହୋଇ ପ୍ରାଣ ଭରି ଉପଭୋଗ କରିଛି ।

ବିକାଶ—କିନ୍ତୁ ଏତେ ସକାଳୁ ତୁ ଚାଲି ଆସିଲୁ କେମିତି ?

ଅଭୟ—କାଲିର ଭୁରି ଭୋଜନ ଯୋଗୁଁ ଆଜ ନଦୀକୂଳରେ ଶୀତଳ ବାୟୁ ସେବନ ଏକାନ୍ତ ଜରୁରୀ ହୋଇ ପଡ଼ିଲା । ଆଉ ତୋ କୋଠାଟା ଯେତେବେଳେ ନଈ କୂଳରେ—

ପ୍ରକାଶ—[ଭିତରକୁ ଉଦ୍ଦେଶ୍ୟ କରି] ଅନାଦି, ଦୁ କପ ଚା ଆଣିବୁ ।

ଅଭୟ - ଅଶୋକ ସ୍କୁଲକୁ ଗଲା ?

ପ୍ରକାଶ—ହଁ ।

ଅଭୟ—ଅଶୋକର ଆଉ କାଲି ତା ହେଲେ ଚନ୍ଦ୍ରଲୋକକୁ ଯିବା ହୋଇ ପାରିଲା ନାହିଁ !

ପ୍ରକାଶ—ନା । ( ଦୁଇ ବନ୍ଧୁ ହସୁଥାନ୍ତି )

ଅଭୟ—ଯେତେ ଯାହା ହଉନା କାହିଁକି, ତାର ଏ ଖାମଖିଆଲି ମତେ ଭାରି ଭଲ ଲାଗେ ।

ପ୍ରକାଶ—( ସିଗ୍ରେଟ ଟିଣ ଖୋଲି ) ସିଗ୍ରେଟ୍ । ( ଦୁହେଁ ସିଗ୍ରେଟ୍ ଧରାଇଲେ

ଅଭୟ—ମାୟାଦେବୀ ଉଠି ନାହାନ୍ତି

ପ୍ରକାଶ—ବୋଧହୁଏ ଉଠିନି । କାଲି ଖଟି ଖଟି ଖୁବ୍ କ୍ଲାନ୍ତ ହୋଇ ପଡ଼ିଛି । [ମାୟା ସିଡ଼ି ଉପ ଦେଖାଦେଲେ ]

ମାୟା—ନମସ୍କାର ।

ଅଭୟ—ଆରେ ! ନମସ୍କାର--ଆସନ୍ତୁ । ଆପଣଙ୍କ କଥା ପଡ଼ୁଥିଲି ।

ମାୟା—ସକାଳୁ ଉଠି ମୋର ଆଜ ପ୍ରଥମେ କାହିଁ ଆପଣଙ୍କ କଥା ମନେ ପଡ଼ିଲା ।

ଅଭୟ—ମୋର ସୌଭାଗ୍ୟ ।

ମାୟା—ଭାଇଙ୍କ କଠିଆ କାଲି ଆପଣ ପଢ଼ିଚନ୍ତି ତ ?

ଅଭୟ—ପଢ଼ିଛି । ଅଶୋକର ଜୁନ୍ ମିଲଟାରୀ କଲେଜରେ ପଢ଼ିବା କଥା ତ ?

ମାୟା—ହଁ, ସେ ଚିଠିର ଉତ୍ତର ଆପଣ ଲେଖିବେ ।

ଅଭୟ—ମୁଁ ଲେଖିବି ? କାହିଁକି ?

ମାୟା—ଭାଇଙ୍କ ଆଖିରେ ମୁଁ ହେଉଛି ଗୋଟାଏ ପାଗଳୀ, ଆଉ ଯାଙ୍କର ବ୍ୟବସାୟୀ ବୁଦ୍ଧି ଛଡ଼ା ଆଉ କିଛି ବୁଦ୍ଧି ନାହିଁ । ଅତଏବ ତାଙ୍କ ପାଖରେ ଆମ ଦୁହିଁଙ୍କର କଥାର ମୂଲ୍ୟ କିଛି ନାହିଁ ।

ବିକାଶ—ଅନ୍ୟ ପକ୍ଷରେ ତୋ ଉପରେ ତାଙ୍କର ଖୁବ୍ ଆସ୍ଥା ରହିଛି ।

ଅଭୟ—ତମେ ଦୁହେଁ ତେବେ କହୁଛ ଯେ ଚିଠିର ଉତ୍ତର ଲେଖି ମୋ ଉପରୁ ତାଙ୍କର ଆସ୍ଥାକୁ ତୁଟେଇ ଦେବାର ବ୍ୟବସ୍ଥା ମୁଁ କରିବି ।

ମାୟା—ତା' ହେଲେ ଆପଣ କଣ ଚାହାନ୍ତି ଯେ ଅଶୋକ ଉନ୍ନ ମିଲିଟାରି କଲେଜରେ ପଢ଼ିବ ?

ଅଭୟ—ଆହା-ହା,—ମୋ ଗୃହିଣୀ ଉପରେ ଯଦି ଏଇଟା ନିର୍ଭର କରେ, ତେବେ ଶୁଣନ୍ତୁ--କଥାଟାକୁ ମୁଁ ଟିକିଏ ବିଶ୍ଳେଷଣ କରି ଦେଖେ । ଆଉ ଏ ବିଶ୍ଳେଷଣ କାମଟା ଯେ କେମିତି ଯନ୍ତ୍ରଣାଦାୟକ···[ବିକାଶ ଓ ମାୟା ହସି ଉଠିଲେ]

ମାୟା—ଦର୍କାର ନାହିଁ ବାବା, କିଏ କାହିଁକି ଆପଣଙ୍କୁ ଯନ୍ତ୍ରଣା ଦେବାକୁ ଯିବ ?

ବିକାଶ—ଶୁଣିଛ ମାୟା ଅଶୋକର କୀର୍ତ୍ତି ?

ମାୟା—କଣ କରିଛି ?

ବିକାଶ—ସକାଳୁ ଆସି ଏଠି ଖୁବ୍ ଜୋରସୋରରେ ସିଗ୍ରେଟ୍ ଟାଣି ଗଲାଣି ।

ମାୟା—ଏଇଆ ? ଯାହା ଘରେ ମାସକୁ ସିଗ୍ରେଟ୍ ଖର୍ଚ୍ଚ ଷାଠିଏ ଟଙ୍କା, ତା ପୁଅ ସିଗ୍ରେଟ୍ ଟାଣିବାରେ ଦୋଷ କେଉଁଠି ରହିଲା ?
[ଫୋନ୍ ପାଖକୁ ଉଠିଗଲା]

ପ୍ରକାଶ—ତା ସିଗ୍ରେଟ୍ ଟାଣିବାରେ ଯୁକ୍ତି କଣ ଜାଣୁ ଅଭୟ ?

ଅଭୟ—ଏଇ···ମାୟାଦେବୀ ଯାହା କହିଗଲେ ସେମିତି କିଛି ଗୋଟାଏ ଯୁକ୍ତି ଥିବ ।
[ମାୟା ଫୋନ୍‌ରେ କଥାବାର୍ତ୍ତା କରିବାକୁ ଆରମ୍ଭ କଲାଣି]

ପ୍ରକାଶ—ତା ଯୁକ୍ତି ଶୁଣି ହସି ହସି ମୁଁ ଗଡ଼ିଗଲି । ତାକୁ କୁଆଡ଼େ ସର୍ଦ୍ଦି ହୋଇଛି । ସେଥିପାଇଁ ସେ ସିଗ୍ରେଟ୍ ଟାଣୁଥିଲା । ସିଗ୍ରେଟ ଧୂଆଁ ବାଜିଲେ ସର୍ଦ୍ଦି ବହାକ୍ ଛୁଡ଼ିଯିବ ।

ମାୟା—କାହାକୁ ସର୍ଦ୍ଦି ହୋଇଛି ?

ଅଭୟ—ଅଶୋକକୁ ।
[ମାୟା ସଙ୍ଗେ ସଙ୍ଗେ ରିସିଭରଟା ରଖି ଦେଇ ଏମାନଙ୍କ ପାଖକୁ ଚାଲି ଆସିଲା]

ମାୟା—ଅଶୋକକୁ ସର୍ଦ୍ଦି ହୋଇଛି ? [ ବଡ଼ ପାଟିରେ ଡାକିଲା ] ଅଶୋକ—ଅଶୋକ ।

ପ୍ରକାଶ—ଅଶୋକ କାହିଁ ? ସେ ତ ସ୍କୁଲକୁ ଗଲାଣି ।

ମାୟା—ସ୍କୁଲକୁ ଗଲାଣି ?

ପ୍ରକାଶ—ହଁ, ଆଜି ଶନିବାର—ତା'ର ମର୍ନିଂସ୍କୁଲ ।

ମାୟା—କହୁଚ ତାକୁ ସର୍ଦ୍ଦି ହୋଇଛି—ତାକୁ ସ୍କୁଲକୁ ପଠାଇ ଦେଲ କେମିତି ?

ପ୍ରକାଶ—ଆଚ୍ଛା କଥା ! ମୁଁ ତ ଦେଖିଲି ବେଳକୁ ସେ ସ୍କୁଲକୁ ଯିବ ବୋଲି ଏକାବେଳକେ ରେଡ଼ି ହୋଇ ରହିଛି । ତା ଜୁତା ସେ ତ ସାନ୍ତମତ ବକ୍‌ସିଂରେ ମତେ ହସାଇ ଦେଇ ଚାଲିଗଲା ।

ମାୟା—ସେ ଗରମ ଜାମା ପିନ୍ଧିନ ?

ବିକାଶ—ଖଣ୍ଡେ ସାଧା ସାର୍ଟ । ତାକୁ ପୁଣି ନ ପିନ୍ଧି କାନ୍ଧରେ ପକେଇ ଯାଉଥିଲା ।

ମାୟା—ତମର ବୁଦ୍ଧି ବୃତ୍ତି ଲୋପ ପାଇଲଣି ଦେଖୁଚ ? କାଲି ସେ ବର୍ଷାରେ ଭିଜିଥିଲା—ସିମେଣ୍ଟ ଚଟାଣରେ ଶୋଇଲା···ଆଜି ତାକୁ ସର୍ଦ୍ଦି ହୋଇଚ ଜାଣି ସୁଦ୍ଧା ଖଣ୍ଡେ ସାଧା ସାର୍ଟ ପିନ୍ଧେଇ ପଠେଇ ଦେଇଚ ? ପୁଣି ଏ ମେଘୁଆ ପାଗରେ ? ନା ମୁଁ ଯାଏ, ତାକୁ ଫେରେଇ ଆଣେ । ଡ୍ରାଇଭର···

ବିକାଶ—ଡ୍ରାଇଭର କଣ କରିବ ? ଗାଡ଼ି ତ କାରଖାନାରେ ପଡ଼ିଚି ।

ମାୟା—[ବିରକ୍ତିରେ] ମୁଁ ଜାଣେ ଦିନେ—ଠିକ୍ ଏତିକି ବେଳକୁ ତମ ଗାଡ଼ି ଖରାପ ହୋଇ କାରଖାନାରେ ପଡ଼ିଥିବ ।

[ ଫୋନ୍ ପାଖକୁ ଯାଇ ରିସିଭର ଉଠାଇଲା ]

ଅଭୟ—କେଉଁଠିକି ଫୋନ କରୁଚନ୍ତି ?

ମାୟା—ସ୍କୁଲକୁ ।

ଅଭୟ—ତାଙ୍କ ସ୍କୁଲକୁ ତ ଫୋନ୍ ନାହିଁ ।

ମାୟା—ଓଃ [ବିରକ୍ତିରେ ଫୋନ୍‌ଟାକୁ କଚାଡ଼ି ରଖିଦେଇ] ଅନାଦି, ଅନାଦି ! [ ଭିତରକୁ ପଶିଗଲା ବେଳକୁ ଅନାଦି ଗୋଟାଏ ଟ୍ରେରେ ଚା ଧରି ଆସୁଥିଲା । ମାୟା ସଙ୍ଗେ ଧକ୍କା ହେବା ଫଳରେ ଦୁଇଟା ଯାକ କପ୍ ପଡ଼ିଗଲା । ମାୟାର କିନ୍ତୁ ସେଥିକି ଭ୍ରୂକ୍ଷେପ ନାହିଁ ] ତୁ ଯା’ ଅନାଦି ଅଶୋକକୁ ସ୍କୁଲରୁ ନେଇ ଆସିବୁ !

ଅନାଦି—ବାବୁଙ୍କ ପାଇଁ ଚା ଆଣୁଥିଲି ।

ମାୟା—ଚା’ ମୁଁ ଆଣୁଚି··· ତୁ ଯା···

( ଠିକ୍ ଏତିକିବେଳେ ବାହାରେ ଅଶୋକର ପାଟି ଶୁଭିଲା)

ଅଶୋକ—ବୋଉ !
ଅନାଦ୍ଧ—ମା—ହେଇ ଲୁନବାବୁ ଆଇଲେଣି ।
ମାୟା—ଅଶୋକ—(ଅଶୋକ ଆସିଲା) ତୁ କମିତ ଆସିଲୁ ?
ଅଶୋକ—ସ୍କୁଲରେ ଯେମିତ ପଢୁଥିଚ, ଶୀତ ହେଲା । ସାର୍ ପଠାଇ ଦେଲେ...
ମାୟା—ତୁ ଗରମ ଜାମା ପିନ୍ଧ ଗଲୁନାହିଁ କାହିଁକ ?
ଅଶୋକ—ବାପା ତ କଛୁ କହଲେ ନାହିଁ ।
ମାୟା—ବାପା ସେ କଥା କାହିଁକ କହବେ ?

( ତା କାନ୍ଧରୁ ବହ ବ୍ୟାଗ୍‌ଟା କାଢ଼ି ଫୋପାଡ ଦେଇ ନଜ କୋଲକୁ ଟାଣି ନେଲାବେଳେ ଅଶୋକ ଯନ୍ତ୍ରଣାରେ ଚିତ୍କାର କର ଉଠିଲା )

ଅଶୋକ—ଓଃ...କାଟୁଚ ।
ମାୟା—କ'ଣ କାଟୁଚ ?
ଅଶୋକ—ଏଇଠି ( ଗଳାର ଉପର ସ୍ଥାନଟା ଦେଖାଇ ଦେଲା । ମାୟା ସେ ଅଂଶଟା ପରୀକ୍ଷା କଲା ବେଳେ ଅଶୋକ ପୁଣି ଯନ୍ତ୍ରଣାରେ ପାଟିକର ଉଠିଲା )
ମାୟା—ଦେଖୁଚ, ଘଣ୍ଟିକାଟା କେମିତ ଫୁଲଚ ।
ଅଭୟ—ହଁ । Gland ଟା ତ ଫୁଲଚ । ବୋଧହୁଏ ଟନ୍‌ସିଲ୍ ଧରିଚ ।
ମାୟା—ଟନ୍‌ସିଲ୍ ?
ପ୍ରକାଶ—ଦେହ ବ ସାମାନ୍ୟ ତାତିଚ ।
ମାୟା—କ'ଣ କରିବ କହଲ ?
ଅଭୟ—ଆପଣ ତାକୁ ନେଇ ଉପରକୁ ଯା'ନ୍ତୁ ।
ଅଶୋକ—ବୋଉ...

ମାୟା—କ'ଣ ?

ଅଶୋକ—( ମାୟାର ହାତକୁ ତା ନିଜ ବେକ ପାଖକୁ ଉଠାଇ ) ଏଠି ଧିରେ ହାତ ରଖ । ଘର ବୁଲୁଚି—

ମାୟା—(ବିକାଶକୁ) ତମେ ଚୁପ୍ ହୋଇ ଠିଆହୋଇଲ କାହିଁକି ?

ଅଭୟ—ଆପଣ ଆଗେ ତାକୁ ନେଇ ଉପରକୁ ଯା'ନ୍ତୁ—ଆମେ ସବୁ ବ୍ୟବସ୍ଥା କରୁଚୁ । ଗୋଟାଏ ମଫଲର୍ ତା ବେକରେ ଗୁଡ଼େଇ ଦେବେ । [ ମାୟା ଓ ଅଶୋକ ସିଡ଼ି ଉପରେ ଅଦୃଶ୍ୟ ହୋଇଗଲେ ]

ବିକାଶ—ଅଭୟ !! [ସେ ନିଜେ ଆତଙ୍କିତ ହୋଇ ଉଠେ]

ଅଭୟ—ତୋ'ର କ'ଣ ହେଲା ?

ବିକାଶ—ଅଶୋକର ଟନସିଲ୍ ପାଚଲା କାହିଁକି ?

ଅଭୟ—ତୁ ଯଦି ପଚାରନ୍ତୁ ଆମ୍ବ ଗଛରେ ପତ୍ର କଅଁଳିଲା କାହିଁକି ? ମୁଁ ତା'ର କି ଉତ୍ତର ଦେବି ? ଦକ୍ଷିଣା ପବନ ବହିଲେ ଯେମିତି ପତ୍ର କଅଁଳେ, ଥଣ୍ଡା ଲାଗିଲେ ସେମିତି ଟନସିଲ ପାଚେ ।

ବିକାଶ—କିନ୍ତୁ ପିଲା ଲୋକ ।

ଅଭୟ—କି ଆଶ୍ଚର୍ଯ୍ୟ କଥା—ପିଲାଲୋକ ବୋଲି ତା ଟନସିଲ୍ ପାଚିବନି ? [ଫୋନ୍ ଉଠାଇ] 5-7-9...ଡାକ୍ତରବାବୁ ...ନମସ୍କାର...ମୁଁ ଅଭୟ କହୁଚି...ଟିକିଏ ବିକାଶ ଘରକୁ ଆସନ୍ତୁ...ନା ନା-ଅଛା ନୁହେଁ...ଅଶୋକର ଦେହ ଭଲ ନାହିଁ...ହଁ...ସଙ୍ଗେ ସଙ୍ଗେ...ଆସନ୍ତୁ ।

ବିକାଶ—ଆସୁଛନ୍ତି ?

ଅଭୟ—କିନ୍ତୁ ତୁ ଏମିତି ନର୍ଭସ ହୋଇ ପଡ଼ୁଚୁ କାହିଁକି ?

ପ୍ରକାଶ—ମୁଁ ନିଜେ ଜାଣେନା ମୁଁ କାହିଁକି ଏମିତି ନର୍ଭସ୍ ହୋଇ ପଡ଼ୁଚି । ଅଶୋକକୁ କାଲି ସାତ ପୂରି ଆଠ ଚାଲିଲା । ଏ ଆଠ ବର୍ଷ ଭିତରେ ଅଶୋକକୁ ଅନ୍ତୁଟିଏ ଜର ହୋଇଥିଲା । ସେ ଦିନର ଦୁରବସ୍ଥା ମୁଁ ଭୁଲି ପାରିନି । ଆଜି ଆଜି···

ଅଭୟ—କିନ୍ତୁ ଏମିତି ହେଲେ ଯେ ଏ ଘରେ କେହି ଚିକିତ୍ସା କରି ପାରିବେ ନାହିଁ । ତାଙ୍କ ଅବସ୍ଥା ତ ଦେଖିଲି—ତୋ' ଅବସ୍ଥା ବି ଦେଖୁଚି—

ପ୍ରକାଶ—ଡାକ୍ତର କେତେବେଳେ ଆସିବେ ?

ଅଭୟ—ଫୋନ୍ କଲି ଆସିଲେ ତ ତିନି ମିନିଟର ବାଟ···ସେ ତ ଗାଡ଼ିରେ ଆସୁଚନ୍ତି ।

[ ଏତିକିବେଳେ ଅଶୋକକୁ ନେଇ ମାୟା ପୁଣି ଆସିଲା । ଭୟରେ ମାୟା ଏକାବେଳକେ କଳା ପଡ଼ି ଗଲାଣି ]

ପ୍ରକାଶ—ମାୟା ?

ଅଭୟ—ଆପଣ ତାକୁ ପୁଣି ଆଣିଲେ କାହିଁକି ?

ମାୟା—ଜର ହୁ ହୁ ବଢ଼ି ଯାଉଚି । ଆଉ କଥା କହି ପାରୁନି··· ବୋଉ, ବୋଉ ବୋଲି ବି ଡାକି ପାରୁନି ।

[ ବାହାରେ ଗାଡ଼ି ରହିବାର ଶବ୍ଦ ]

ଅଭୟ—ଏଇ ତ, ଡାକ୍ତର ବାବୁ ଆସିଲେଣି । [ଡାକ୍ତର ଆସିଲେ]

ଡାକ୍ତର—ଅଶୋକର କ'ଣ ହୋଇଚି ?

ଅଭୟ—ବୋଧହୁଏ ଟନ୍‌ସିଲ୍ ।

ଡାକ୍ତର—ଟନ୍‌ସିଲ୍ ? [ଅଶୋକକୁ] ଆଇଲୁ ବାବା, ଦେଖେ କ'ଣ ହୋଇଚି ? [ଦେଖି] ହୁଁ···କେତେବେଳୁ Attack କଲାଣି ?

ପ୍ରକାଶ—ଆଜି ଭୋର୍‌ବେଳେ ତ ପ୍ରାୟ ଭଲ ଥିଲା ।

ଡାକ୍ତର—ପଦାକୁ କୁଆଡ଼େ ଯାଇଥିଲ ?

ବିକାଶ—ହଁ, ସ୍କୁଲକୁ ଯାଇଥିଲ ।

ଡାକ୍ତର—ଖୋଲା ଦେହରେ ?

ବିକାଶ—ଖଣ୍ଡେ ସାଦା ସାର୍ଟ ପିନ୍ଧି ।

ଡାକ୍ତର—ସେଥି ପାଇଁ ଏଭଳି ଡବଲ ନିମୋନିଆ ଡେଭଲପ୍ କରି ଯାଇଚି । କିଛି ଚିନ୍ତା ନାହିଁ । ଅଭୟ ବାବୁ ! ଆପଣ ଆସନ୍ତୁ ମୋ ସାଥିରେ, ମୁଁ ଆଗେ ଆଗେ ସବୁ ବ୍ୟବସ୍ଥା କରୁଚି···[ଅଭୟ ଓ ଡାକ୍ତର ଚାଲିଗଲେ । ]

ମାୟା—ଡାକ୍ତରଙ୍କ କଥା ଶୁଣିଲ ତ ?

ବିକାଶ—ହଠାତ୍ ଏମିତି ହବ ବୋଲି କିଏ ଜାଣିଥିଲା ?

ମାୟା—କିଏ ଆଉ ଜାଣେନା ? ତମେ ତ ଜାଣି ପାରିଲ ନାହିଁ, ଆଉ ଜାଣିବ କିଏ ?

ବିକାଶ—ଅଶୋକ !

ଅଶୋକ—[ ଯନ୍ତ୍ରଣାରେ ] ଉଁ ।

ବିକାଶ—ଦେହ କେମିତି ଲାଗୁଚିରେ ବାବୁ ? ଖୁବ କଷ୍ଟ ହଉଚି ?

ମାୟା—ଦେଖୁଚ ତ ଯନ୍ତ୍ରଣାରେ କଥା କହି ପାରୁନି···ଆଉ ପୁଅଙ୍କର ଖାଲି ସୋହାଗ ଉଚ୍ଛୁଳି ପଡ଼ୁଚି ।

ବିକାଶ—ଆଇଲୁ ବାବା ( ଅଶୋକକୁ ଆଣିବା ପାଇଁ ହାତ ବଢ଼ାଇଲା )

ମାୟା—ନା···

[ ଅଶୋକକୁ ଉଠାଇ ନେଇ କ୍ଷିପ୍ର ଗତିରେ ଉପରକୁ ଚାଲିଗଲା । ବିକାଶ ନିର୍ବୋଧଙ୍କ ଭଳି ଠିଆ ହୋଇ ରହିଥାଏ ]

---

# ଦ୍ୱିତୀୟ ଅଙ୍କ

[ପୂର୍ବର ସେଇ କକ୍ଷ । ପରଦିନ ସନ୍ଧ୍ୟାର ଘଟଣା । ଆରମ୍ଭରେ ଦେଖାଗଲା ମଞ୍ଚ ଶୂନ୍ୟ । ସବୁଆଡ଼େ ଯେମିତି ଗୋଟିଏ ଅସ୍ୱାଭାବିକ ନିସ୍ତବ୍ଧତା । ଟିକିଏ ପରେ ବାହାରୁ ଆସିଲା ଅଭୟ । ଏତେ-ବେଳେ ଏଠି କାହାକୁ ଦେଖିବାକୁ ପାଇବନି, ଏ ଆଶା ଯେମିତି ତା'ର ନ ଥିଲା । ]

ଅଭୟ—କେହି କଣ ନାହାନ୍ତି ? (ଡାକଲେ) ଅନାଦି-ଅନାଦି ।

[ଅନାଦି ଆସିଲା] କଣ ନାମ ନିଆ ସରନାହିଁ ?

ଅନାଦି—ନାଇଁ ବାବୁ, କାମଦାମ ତ ଆଜ କିଛି ନାହିଁ ।

ଅଭୟ—କାମଦାମ କିଛି ନାହିଁ ମାନେ ?

ଅନାଦି—ଦେଖୁନାହାନ୍ତି, କାଲି ଏତେବେଳକୁ ହୋ ହୋ ଘୋ ଘୋ, ଆଜ ସବୁ ଶୂନ୍‌ଶାନ ।

ଅଭୟ—ଦେଖୁଚି ତ ସବୁ ଶୂନଶାନ୍ । ବିକାଶ କାହିଁ ? ଅଶୋକ ଦେବ କେମିତି ଅଛି ?

ଅନାଦି—ସକାଳୁ ଆସି ଘଣ୍ଟା ଏତେ ହେଲାଣି, କୁନିବାବୁ ଚଳକୁ ଉଠୁନାହାନ୍ତି । ସେମିତି ଖଟଟି ଉପରେ ମୂଷାଟି ପରି ପଡ଼ି ରହିଚନ୍ତି ।

ଅଭୟ—ବିକାଶ ଉପରେ ଅଛି ?

ଅନାଦି— ଡାକ୍ତର ବାବୁ ବି ଆଇଚନ୍ତି ।

ଅଭୟ—ଡାକ୍ତର ବାବୁ ଆସିଚନ୍ତି ?

ଅନାଦି—ହଁ, ଆପଣ ଉପରକୁ ଯାଉ ନାହାନ୍ତି ।

ଅଭୟ—ଆଚ୍ଛା—(ସିଡ଼ି ଉପରକୁ ଉଠିଲା ବେଳକୁ ବିକାଶ ଓ ଡାକ୍ତର ଆସିଲେ )

ଡାକ୍ତର—ଅଭୟ ବାବୁ—ଆପଣ ଆସିଛନ୍ତି, ଭଲ ହେଇଚି । ଏ ସ୍ୱାମୀ-ସ୍ତ୍ରୀ ଦୁହେଁ ଯେମିତି ନର୍ଭାସ୍, ପଦେ କଥା ବି ଆଲୋଚନା କରି ହଉନି ।

ଅଭୟ—ଅଶୋକର ଅବସ୍ଥା କେମିତି ?

ବିକାଶ—ଆଦୌ ଭଲ ନୁହେଁ । ବରଂ ଖରାପ ଆଡ଼କୁ ଗତି କରୁଚି । ତୁ ସକାଳେ ଯାହା ଦେଖି ଯାଇଥିଲୁ······

ଡାକ୍ତର—ଆହା—ହା··· ବିକାଶବାବୁ, ଆପଣ ପୁଣି ଏମିତି ବିଚଳିତ ହେଇ ପଡ଼ିଲେ ? ଆପଣ କଣ ବୁଝିଲେ ଯେ, ଅବସ୍ଥା ଖରାପ ଆଡ଼କୁ ଗତି କରିଛି ବୋଲି କହୁଛନ୍ତି ?

ବିକାଶ—ପ୍ରକୃତ ଅବସ୍ଥାଟା ଲୁଚାଇ ଲାଭ କଅଣ ?

ଡାକ୍ତର—ଏଇଟାଇ ସବୁଠାରୁ କ୍ଷତିକାରକ । ଆପଣଙ୍କ ମନରେ ଗୋଟାଏ ଧାରଣା ଆସିଲାଣି ଯେ ପ୍ରକୃତ ଅବସ୍ଥାଟା ଆପଣଙ୍କୁ ଲୁଚାଇ ଦିଆଯାଉଚି ।

ଅଭୟ—ବାସ୍ତବିକ୍ ବିକାଶ, ତୋର ଅବସ୍ଥା ଦେଖି ମୁଁ ଭାବୁଚି ଯେ ସତ କଥାଟା ତୋଠୁଁ ଲୁଚାଇ ରଖିବା ଉଚିତ । ତା ନ ହେଲେ ଏଠି କିଏ ଏମିତି ଚିକିତ୍ସା କରିବ ?

ଡାକ୍ତର—ଶୁଣନ୍ତୁ ଅଭୟ ବାବୁ, ଆଜି ଦିନ ଭିତରେ ମୁଁ ଅଶୋକକୁ ତିନି ଥର ଦେଖିଲିଣି । ଏ କଥା ଅବଶ୍ୟ ସତ ଯେ ଅବସ୍ଥାର ବିଶେଷ କିଛି ପରିବର୍ତ୍ତନ ହେଇନି—

ବିକାଶ—ମୁଁ ତ ସେଇ କଥା କହୁଚି—

ଡାକ୍ତର—(ହସିହସି) ଆପଣ ଆଉ ସେ କଥା କହୁନାହାନ୍ତି । ଆପଣଙ୍କର ଆଶଙ୍କା ଯେ ଅବସ୍ଥା ଏକାବେଳକେ ଆମ ଆୟତ୍ତର ବାହାରକୁ ଚାଲି ଗଲଣି ।

ବିକାଶ—ନା, ନା, ଏ ଆଶଙ୍କା ମୁଁ କରିବି କାହିଁକି ?

ଅଭୟ—ବେଶ୍, ତେବେ କଣ ଚୋରି ଆଶଙ୍କା—କଣ ଚୋରି ଆଶା କି କେଉଁଠି ଚୋରି ନଗଣା ; ତୁ ସ୍ପଷ୍ଟ ସେ କଥା କହିଦେ—ତା ପରେ ଡାକ୍ତରବାବୁ ଯାହା କରିବାର କରିବେ ।

ବିକାଶ—ଆଜ ରାତି ଭିତରେ ଟେମ୍ପରେଚର୍‌ଟା ଟିକଏ କେମିତି କମି ଯାନ୍ତା—

ଡାକ୍ତର—ଆଚ୍ଛା, ଆଚ୍ଛା, ଆପଣଙ୍କ କଥା ହିଁ ହେଲା—ଟେମ୍ପରେଚର କମିବ । ଫୋନ୍‌ଟା କାହିଁ ?

( ଫୋନ୍ ପାଖକୁ ଉଠିଯିବା ବେଳେ ମାୟା ଆସି ସିଡ଼ିର ଉପର ପାହାଚରେ ଠିଆ ହେଲା । ଡାକ୍ତର ଅଟକି ଗଲେ । ମାୟା ଓହ୍ଲାଇ ଆସିଲା । )

ମାୟା—(ଡାକିଲା)—ଅନାଦି, ଅନାଦି··· (ଅନାଦି ଭିତରୁ ଆସିଲା)

ଅନାଦି—ମା’

ମାୟା—ତୁ ଅଶୋକ ପାଖରେ ଯାଇ ବସ ।

( ଅନାଦି ଉପରକୁ ଗଲା )

ବିକାଶ—ମୁକ୍ତା ସେଠି ନାହିଁ କି ?

ମାୟା—ଅଛି ।

ବିକାଶ—ତମେ ଆସିଲ କାହିଁକି ?

ମାୟା—ଡାକ୍ତରବାବୁ କ’ଣ ବାହାରିଲେଣି ?

ଡାକ୍ତର—ନାଁ, ମୁଁ ଯାଇନ ।

ମାୟା – କ'ଣ କରିବ କହନ୍ତୁ – ମୋଟେ ଶୋଉନି ।

ଡାକ୍ତର – ନ ଶୋଉ । ଆଜି ସାରା ଦିନ ତ ମଝିରେ ମଝିରେ ଶୋଇଚି ।

ମାୟା – ଆଜି ରାତି ଭିତରେ ଟେମ୍ପରେଚର୍‌ଟା କମେଇ ଦେଇ ପାରିବେ ନି ?

ଡାକ୍ତର – ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ସେଇ ବ୍ୟବସ୍ଥା କରୁଚି ।

ମାୟା – ଆଜି ରାତିରେ ଆପଣ ଆଉ ବୋଧହୁଏ ଆସିବେ ନାହିଁ ?

ଡାକ୍ତର – ଦରକାର ପଡ଼ିଲେ ଫୋନ୍ କରିବେ, ଆସିବି ।

ମାୟା – ହଉ । ଯାଉ ଯାଉ ଫେରି ) ପୁଣି କ'ଣ ଇଞ୍ଜେକ୍‌ସନ୍ ଦିଆଯିବ ?

ଡାକ୍ତର – ହୁଏତ ଦିଆଯାଇପାରେ । କାହିଁକି ?

ମାୟା – ଏଇ ଇଞ୍ଜେକ୍‌ସନ୍‌ଟା ନବା ପରେ ଖରି ଡରିଯାଉଚି –

ପ୍ରକାଶ – ହଁ ଖୁବ୍ ତ କାନ୍ଦିଲା ।

ମାୟା — ଏଇନେ କହୁଚି, ଡାକ୍ତର ବାବୁଙ୍କୁ କହ ବୋଉ, ଆଜି ଇଞ୍ଜେକ୍‌ସନ୍ ଦେବେ ନାହିଁ ।

ଡାକ୍ତର — ପିଲା ଲୋକ···

ଅଭୟ — ସବୁ ପିଲା ସେମିତି ନୂଆବୋଉ, ଟୀକା ଦିଆର ବୋଲୁଆ ଭୟ ସମସ୍ତଙ୍କର ଅଛି ।

ପ୍ରକାଶ – ଏଇ ଔଷଧ ପଥ୍ୟ ତେବେ ଚାଲିବ ?

ଡାକ୍ତର — ନାଁ, ମୁଁ ଭାବୁଥିଲି···

ମାୟା — କଣ ?

ଡାକ୍ତର — ଅପରେସନ୍ କରିଯାଇ ପାରେ କି ନା ?

ପ୍ରକାଶ } ଅପରେସନ୍ !!!
ମାୟା }

[ପ୍ରକାଶ ଓ ମାୟା ଉଭୟେ ଯେମିତି ଏ ପ୍ରସ୍ତାବଟା
ପାଇଁ ଆଦୌ ପ୍ରସ୍ତୁତ ନ ଥିଲେ]

ଡାକ୍ତର—ହଁ, ସେଇ କଥା ମୁଁ ଭାବୁଚି ।

ମାୟା—ନା, ନା, ଅପରେସନ୍ କଥା ଆପଣ ଭାବୁଚନ୍ତି କାହିଁକି ? ଏମିତି ଔଷଧ ପତ୍ରରେ କଣ ଭଲ ହୋଇଯିବ ନାହିଁ ?

ଡାକ୍ତର—ଭଲ ହୋଇଯିବ ବୋଲି ତ ଔଷଧ ଦିଆଯାଇଚି ।

ମାୟା—ତା ହେଲେ ଅପରେସନ୍ ଯାଏ କଥା ଯିବ କାହିଁକି ? ଦେଖିଲେ ତ, ଇଞ୍ଜେକ୍‌ସନ୍ ନା ଶୁଣି ସେ ଡରୁଚି । ଯେତେ ଦାମିକା ଔଷଧ ହଉ ପଛକେ, ଆପଣ ପ୍ରେସ୍କ୍ରାଇବ୍ କରନ୍ତୁ । (ପ୍ରକାଶକୁ) ତମେ ଗାଡ଼ି ନେଇ ଡାକ୍ତର ବାବୁଙ୍କୁ ଛାଡ଼ି ଆସିବ । ହଁ, ଘରେ ଆଉ ବେଦାନା ନାହିଁ । ଆସିଲା ବେଳେ ବେଦାନା ଆଣିବ । ମୁଁ ଯାଉଚି ଅଶୋକ ପାଖକୁ···(ଉପରକୁ ଚାଲିଗଲା)

ପ୍ରକାଶ—ଡାକ୍ତର ବାବୁ—

ଡାକ୍ତର—ଅପରେସନ୍ କଥା କହୁଚନ୍ତି ତ ?

ପ୍ରକାଶ—ହଁ, ପ୍ରକୃତରେ କଣ ଅପରେସନ୍ ଦରକାର ?

ଅଭୟ—ସେ କଥା ଆଉ ଉଠୁଚି କାହିଁକି ? ଅପରେସନ୍ ଯେମିତି ଡାକ୍ତରୀ ବିଦ୍ୟାର ଗୋଟାଏ ଅଙ୍ଗ ନୁହେଁ !!! ନୂଆବୋଉ ତ ସେମିତି ଭାବେ କଥାଟାକୁ ଉଡ଼େଇ ଦେଇଗଲେ ।

(ଡାକ୍ତର ଯାଇ ଫୋନ୍ ଧରଲେଣି)

ପ୍ରକାଶ—ତୁ ବୁଝି ପାରୁନୁ ଅଭୟ—ହଠାତ୍ ଅପରେସନ୍ କଥାଟା ଉଠିବ ବୋଲି ଆମେ କେହି ଆଶା କରି ନ ଥିଲୁ ।

ଅଭୟ—ମୋର ଧାରଣା କଣ ଜାଣୁ ବିକାଶ ? ତୋର ଡାକ୍ତର ବାବୁଙ୍କ କଥା ମାନି ନବା ଉଚିତ ।

ବିକାଶ—ଡାକ୍ତର ବାବୁଙ୍କ କଥାରୁ ବାହାରି ଯିବାର ଦୁଃସାହସ ମୋର ନାହିଁ । ମୁଁ ଖାଲି କହୁଥିଲି—

( ଡାକ୍ତର ଫୋନ୍ କରୁଥାନ୍ତି । ଏମାନଙ୍କୁ ନୀରବ ରହିବାର ଇଙ୍ଗିତ ଦେଲେ )

ଡାକ୍ତର—(ଫୋନ୍‌ରେ) ହଁ ଏଇ ପାଞ୍ଚମିନିଟ ହେବ···ହଁ, ହଁ, Exactly···ତା ହେଲେ ଆପଣ ଏକମତ ? Thanks··· ମୁଁ ବର୍ତ୍ତମାନ ଏମାନଙ୍କୁ ଏଠି ସେଇକଥା କହୁଥିଲି···ହଁ ଆଜ୍ଞା···ଏଁ ? ଆଜି ?—ଏଇ ସପ୍ତାହ ଭିତରେ ?···ଓ । ଅଚ୍ଛା···ଅଚ୍ଛା··· ନମସ୍କାର ଆଜ୍ଞା···

(ଫୋନ୍ ରଖି ଫୋନ୍ ଉପରେ ହାତ ରଖି ଠିଆ ହୋଇଥାନ୍ତି)

ଡାକ୍ତର ତ୍ରିପାଠୀଙ୍କ ପାଖକୁ ଫୋନ୍ କରୁଥିଲି ।

ବିକାଶ—ଏଇ ସମ୍ବନ୍ଧରେ ?

ଡାକ୍ତର—ହଁ···

ଅଭୟ—ତାଙ୍କର ମତ କଣ ?

ଡାକ୍ତର—କହୁଚି (ଫୋନ୍ ଉଠାଇ) ଓ୍ୱାନ—ଡବ୍ଲ—ଓ୍ୟାନ୍ । ମୁଁ ଡାକ୍ତର ମହାପାତ୍ର କହୁଚି । ହଁ···ନମସ୍କାର···କେବିନ୍ ଖାଲି ଅଛି ନା ? ଗୋଟିଏ ? ସେଇଟା ମୋ ପାଇଁ ରିଜର୍ଭ ରଖନ୍ତୁ । ହଁ···ମୋର ନିଜର କେସ୍···ଅଚ୍ଛା—ନମସ୍କାର···

ବିକାଶ—କେବିନ୍ କଣ ହେବ ?

ଡାକ୍ତର—ଡାକ୍ତର ତ୍ରିପାଠୀଙ୍କ ପାଖକୁ ଫୋନ୍ କରୁଥିଲି । ସେ ମୋ ସହିତ ଏକମତ—

ଅଭୟ—ମାନେ ?

ଡାକ୍ତର—ଦେଖନ୍ତୁ ପ୍ରକାଶ ବାବୁ, ଅଶୋକର ପେଟ—ଟନ୍‌ସିଲର ଆବ୍‌ସିସ ହୋଇଛି—ଟନ୍‌ସିଲ୍‌ରେ ପୂଜ ହୋଇଛି । ଅପରେସନ୍ ଆଜ ରାତିରେ କରିବାକୁ ହବ ।

ଅଭୟ—ଏ କେସ୍‌ର ସମସ୍ତ ଇତିହାସ ସେ ଜାଣନ୍ତି ?

ଡାକ୍ତର—ହଁ । ଏଠିକି ଆସିବା ପୂର୍ବରୁ ମୁଁ ତାଙ୍କ ସହିତ Consult କରି ଆସିଥିଲି । ବର୍ତ୍ତମାନ ଫୋନ୍‌ରେ ସେ ଏଇ କଥା କହିଲେ ।

ପ୍ରକାଶ—ତାଙ୍କର ତା ହେଲେ ଏଇ ମତ ?

ଡାକ୍ତର—ଖାଲି ଏଇ ମତ ନୁହେଁ—ସେ ଜୋର୍ କରି କହୁଛନ୍ତି ଯେ ଏଇ ରାତି ଭିତରେ ଅପରେସନ୍ କରିବାକୁ ହବ ।

ପ୍ରକାଶ—ଆଜ ରାତି ଭିତରେ ?

ଡାକ୍ତର—ହଁ…

ପ୍ରକାଶ—ମୋର ଆଶଙ୍କା ତା ହେଲେ ଠିକ୍ ?

ଡାକ୍ତର—ନା, ଆଜ ରାତି ଭିତରେ ଅପରେସନ୍ ନ ହେଲେ ଆପଣଙ୍କ ଆଶଙ୍କା ଠିକ୍ ବୋଲି ମୁଁ କହିବି ।

ଅଭୟ—ତେବେ କୁହନ୍ତୁ ଡାକ୍ତର ବାବୁ, ବର୍ତ୍ତମାନ କଣ କରିବାକୁ ହେବ । ରାତି ପ୍ରାୟ ନଅଟା ବାଜିଲାଣି ।

ଡାକ୍ତର—ଭାଗ୍ୟକୁ ଗୋଟାଏ କେବିନ ଖାଲି ଥିଲା । ମୁଁ ରିଜର୍ଭ କରେଇ ଦେଇଛି ।

ପ୍ରକାଶ—ଅନାଦି—ଅନାଦି !

ଅଭୟ—ଅନାଦି ଉପରକୁ ଯାଇଛି ପରା ?

ପ୍ରକାଶ—ଓ [ବଡ଼ ପାଟିରେ] ଅନାଦି, ଅନାଦି, (ଅନାଦି ଆସିଲା) ମା'ଙ୍କୁ ଡାକି ଦେଲୁ । [ଅନାଦି ଚାଲିଗଲା]

ଅଭୟ—ତାଙ୍କୁ ଡାକିଲୁ ଯେ ?

ଡାକ୍ତର—ବାଃ – ନ ଡାକିବେ କାହିଁକି ? ସେ ତ ପୁଣି ଅଶୋକ ସାଥିରେ ଯିବେ···

ପ୍ରକାଶ—ଏ ସ୍ତଭଟାରେ କଣ ସବୁ ସୁବିଧା ହୋଇ ପାରିବ ?

ଡାକ୍ତର—ଅଶୋକର ଅପରେସନ୍ ହେବ – ଏ କଥା ଆପଣ ମନେ ପକାଉଛନ୍ତି ପ୍ରକାଶ ବାବୁ ? ବର୍ତ୍ତମାନ ସ୍ତଭ ନଟା ବାଜିଛି – କାଲି ସ୍ତଭ ନଟା ବେଳକୁ ଦେଖିବେ—

[ଏତିକି ବେଳେ ମାୟା ସିଡ଼ି ଉପରକୁ ଆସିଲା ]

ମାୟା—କଣ ?

ଡାକ୍ତର—ଆପଣ ତଳକୁ ଆସନ୍ତୁ । [ ମାୟା ଆସିଲା । ]

ମାୟା—ମୁଁ ଭାବିଲି ଆପଣ ଚାଲି ଯିବେଣି···

ଡାକ୍ତର—ଅଶୋକ ଶୋଇଛି ?

ମାୟା—ନା, ଆଦୌ ଶୋଉନି – ସେମିତି ଛଟପଟ ହେଉଛି ।

ଡାକ୍ତର—ହୁଁ ।

ମାୟା—ଏ ଅବସ୍ଥା କେତେବେଳ ଯାଏ ରହିବ ଡାକ୍ତର ବାବୁ ?

ଡାକ୍ତର—ବେଶୀ ବେଳ ଯେମିତି ନ ରହେ ସେଇ ବ୍ୟବସ୍ଥା କରି-ଯାଉଛି······

ମାୟା—କଣ ?

ଡାକ୍ତର—ଅଶୋକର ଅପରେସନ୍ କରିବାକୁ ହେବ । ଅନେକ ଭାବିଚିନ୍ତି ଶେଷକୁ ଏଇ ନିଷ୍ପତ୍ତି ନବାକୁ ପଡ଼ିଲା ।

ମାୟା—(ପ୍ରକାଶକୁ) ଏ ବ୍ୟବସ୍ଥା ତମେ କରେଇଛ ?

ଡାକ୍ତର—ବାଃ – ମୁଁ ଡାକ୍ତର – ସେ କଣ ବ୍ୟବସ୍ଥା କରିବେ ?

ଅଭୟ—କିନ୍ତୁ ତୁମେ ନିଜେ କଣ ଏ ବ୍ୟବସ୍ଥାରେ ରାଜି ନୁହେଁ ନୂଆବୋଉ ?

ପ୍ରକାଶ—ମାୟା !

ମାୟା—(ବିକାଶଙ୍କୁ) ତମେ ତେବେ ରାଜି ହେଉଚ ?

ଅଭୟ – ତାର ରାଜି ନ ହେଇ ଉପାୟ କଣ ?

ଡାକ୍ତର—ମୁଁ ବୁଝି ପାରୁନ ଅଭୟ ବାବୁ, ଏଠି ରାଜି ଅରାଜିର ସ୍ଥାନ କେଉଁଠି ? ଅପରେସନ୍ ଛଡ଼ା ଯେତେବେଳେ ଅନ୍ୟ ଉପାୟ ନାହିଁ ···

ମାୟା—ଉପାୟ ନାହିଁ ?

ବିକାଶ—ଡାକ୍ତର ବାବୁଙ୍କ ସହିତ ଆମର ସମ୍ବନ୍ଧ ତ ତମେ ଜାଣ ମାୟା—ତାଙ୍କ କଥା ମାନ ଆମକୁ ଚଳିବାକୁ ହବ ।

ଅଭୟ—ତା' ଛଡ଼ା ଏଇ ବର୍ତ୍ତମାନ ସେ ଡାକ୍ତର ତ୍ରିପାଠୀଙ୍କ ସହିତ ପରାମର୍ଶ କରିଥିଲେ । ତାଙ୍କର ମଧ୍ୟ ଏଇ ମତ । ହଁ, ଅପରେ-ସନ୍ କେତେବେଳେ ହେବ ଡାକ୍ତର ବାବୁ ?

ଡାକ୍ତର—ଆଜି ରାତି ଭିତରେ । ଆଉ ଡେରି କରି ଲାଭ ନାହିଁ··· ମାୟାଦେବୀ – ଅଶୋକକୁ ବର୍ତ୍ତମାନ କେବିନ୍‌କୁ ନେଇ ଯିବାକୁ ହବ । କେବିନ ତ ରିଜର୍ଭ କରାହେଇଚି । (ମାୟା କେବଳ ସ୍ଥିରଦୃଷ୍ଟିରେ ଚାହିଁ ରହିଥାଏ )

ଅଭୟ – ତମ ଗାଡ଼ିଟା କାରଖାନାରୁ ଆସିଲଣି ବିକାଶ ?

ବିକାଶ – ହଁ, ଚାଲ ମାୟା – ତମେ ଯିବ – ଅଭୟର ପିଲାମାନେ ମଧ୍ୟ ଯିବେ ।

ଅଭୟ – ନିଶ୍ଚୟ । ସେମାନେ ବି ଯିବେ । ତୁ ନୂଆବୋଉ ଆଉ ଅଶୋକକୁ ନେଇ କେବିନକୁ ଯା, ମୁଁ ସେମାନଙ୍କୁ ନେଇ ଯାଉଚି –

ବିକାଶ – ଆଉ ଡେରି କରନି ମାୟା – ଆଜି ଅପରେସନ୍ ହେଇ-ଗଲେ··· ।

ମାୟା – ( ଦୃଢ଼ କଣ୍ଠରେ ) ନା –

ଡାକ୍ତର — ମାୟାଦେବୀ !
ମାୟା — ମତେ କ୍ଷମା କରନ୍ତୁ ଡାକ୍ତର ବାବୁ — ଆପଣଙ୍କ ପ୍ରସ୍ତାବରେ ମୁଁ ରାଜି ନୁହେଁ । ଅଶୋକର ଅପରେସନ୍ ହବନାହିଁ ।
(ଉପରକୁ ଚାଲିଗଲା ।)
ପ୍ରକାଶ — ମାୟା — ମାୟା — ଶୁଣିଯାଅ ମାୟା —
ଅଭୟ — ମୁଁ ଏଇ ଆଶଙ୍କା କରୁଥିଲି ।
ଡାକ୍ତର — କିନ୍ତୁ କାହିଁକି ? ଏ ଜିଦ୍ ତାଙ୍କର କାହିଁକି ?
ଅଭୟ — ଏ ଜିଦ୍‌ର ମୂଳ କାରଣ ହଉଚି ଯେ ନୂଆଦିନାରୁ ଅତି ମାତ୍ରାରେ ଅଶୋକକୁ ସ୍ନେହ କରନ୍ତି — ଯାହା ସଚରାଚର ଦେଖା ଯାଏନି । ଆଜି ତାଙ୍କର ଏ ଜିଦ୍ ବଜାୟ ରହି ପାରୁଚି, କାରଣ ନିଜେ ପ୍ରକାଶ ମଧ ଠିକ୍ ସେଇପରି ସ୍ନେହପାଗଳ । ଅତଏବ ଏ କ୍ଷେତ୍ରରେ ଦୁହେଁ ଦୁର୍ବଳ ହୋଇ ପଡ଼ିଚନ୍ତି ।
ଡାକ୍ତର — ବୁଝିଲି । କିନ୍ତୁ ଅଶୋକର ଅପରେସନ୍ ହବନାହିଁ ଏ ଜିଦ୍ ମୂଳରେ କି ଯୁକ୍ତି ରହିଚି ?
ପ୍ରକାଶ — ଏ ଜିଦ୍‌ର କାରଣ ଅଛି ଡାକ୍ତର । ଅଶୋକର ଜନ୍ମ ବେଳେ ମାୟାର ପେଟ ଅପରେସନ୍ ହେଲା । ଡାକ୍ତର କହିଲେ, ଜୀବନରେ ମାୟା ଆଉ କେବେ ସନ୍ତାନ-ସମ୍ଭବା ହୋଇ ପାରିବ ନାହିଁ । ବିବାହର ମାତ୍ର ଦୁଇଟା ବର୍ଷ ପରେ ଏପରି ଦୁର୍ଘଟଣା ପାଇଁ ମାୟା ବୋଧହୁଏ ପ୍ରସ୍ତୁତ ନ ଥିଲା । ମାତ୍ର ଗୋଟିଏ ସନ୍ତାନର ମା ସେ — ତା ପକ୍ଷରେ ଏହା ଯେପରି ଏକ ବଜ୍ରପାତ ।
ଡାକ୍ତର — ଏ କଥା ତ ମୁଁ ଜାଣେ ନା । ସେଇଥି ପାଇଁ ତାହେଲେ ସେ ଅପରେସନ୍‌ଠାରୁ ଏମିତି ଦୂରରେ ରହିବାକୁ ଚାହାନ୍ତି । କିନ୍ତୁ ଆପଣ ତ ବୁଝୁଚନ୍ତି ପ୍ରକାଶ ବାବୁ ।

ପ୍ରକାଶ — ସେଇ କଥା କହୁଚି । ମାଷ୍ଟର ଅପରେସନ୍ ହେଇଗଲା — ପାଖରେ ତାର ଶୋଇଚି ଦୁଇ ଦିନର ପୁଅ — ଅଶୋକ । ତାର ମୁହଁକୁ ଚାହିଁ ମାଷ୍ଟ୍ରା ଭାବୁଥାଏ — ତାର ଜୀବନ ଯେମିତି ଗଢ଼ା ହୋଇଥିଲା କେବଳ ଏଇ ଅଶୋକର ମା' ହେବାପାଇଁ । ଅଶୋକ ସମ୍ରାଟ ହେଉ କି ସନ୍ନ୍ୟାସୀ ହେଉ, ସେ ଚୋର, ଡକାଏତ, ସୈତାନ ହଉ ବା ସାଧୁ, ସରଳ, ବିଦ୍ୱାନ ହଉ, ଏକା ସେଇ ତାକୁ ଚିରଦିନ ମା'ର ଆସନରେ ବସାଇବ··· । ସେଇଥି ପାଇଁ ସେଇ ମୁହୂର୍ତ୍ତରେ ସେ ନିଷ୍ପତ୍ତି କରି ନେଲା ଯେ ତା ଆଖିରେ ସ୍ୱୟଂ ଭଗବାନ ହୁଏତ ଭୁଲ୍ କରି ପାରନ୍ତି କିନ୍ତୁ ଅଶୋକ ଭୁଲ କରି ପାରିବ ନାହିଁ । ତ'ପରେ ଏଇ ଦୀର୍ଘ ସାତ ବର୍ଷ କଟି ଯାଇଚି — ଗୋଟାଏ ସ୍ନେହ-ଅନ୍ଧିଣୀ ମା'ର ଭୁଲ ଭାଙ୍ଗିବା ଭଳି ସବଳ ମୁଁ ହେଇ ପାରିନି । ବରଂ ମୁଁ ନିଜେ ଦୁର୍ବଳ ହୋଇ ପଡ଼ିଚି··· ।

ଡାକ୍ତର — କିନ୍ତୁ ଆଜି ଏ ଅବସ୍ଥାରେ··· ଆପଣ ତ ଦୁର୍ବଳ ହେଲେ ଚଳିବ ନାହିଁ ପ୍ରକାଶବାବୁ · ।

ପ୍ରକାଶ — କିନ୍ତୁ ମୁଁ କରିବି କଣ ? ମାଷ୍ଟ୍ରା ଯଦି ଭାବୁଥାଏ ଆପଣଙ୍କ କଥାରେ ରାଜି ହେଲେ, ତା ପୁଅର ମଙ୍ଗଳ ନ ହୋଇ ଅମଙ୍ଗଳ ହେବ, ମୁଁ ତାକୁ କଣ କହି ବୁଝାଇବି ?

ଡାକ୍ତର — ମୁଁ ଡାକ୍ତର । ସେଥି ପାଇଁ ଆଜି ଅଶୋକର ଏ ଅବସ୍ଥାରେ ମୁଁ ତାକୁ ଛାଡ଼ିଦେଇ ଚାଲିଗଲେ ମୁଁ ନିଜେ ନିଜ ପାଖରେ ଅପରାଧୀ ହୋଇ ପଡ଼ିବି । ଆପଣ ପୁଣି ତାଙ୍କୁ ଡାକନ୍ତୁ ।

ପ୍ରକାଶ — କିନ୍ତୁ ତା ମନର ଅବସ୍ଥା ବର୍ତ୍ତମାନ ଯାହା, ଆଉ ସେ ଯେମିତି ଜିଦ୍‌ଖୋର···

ଡାକ୍ତର—ତାଙ୍କର ସେ ଜିଦ୍ ଭାଙ୍ଗିବାକୁ ପଡ଼ିବ—

( ଅନାଦ୍ଧ ଉପରୁ ଆସିଲ )

ଅଭୟ—କିରେ ଅନାଦ୍ଧ । କୁଆଡ଼େ ଯାଉଚୁ ?

ଅନାଦ୍ଧ—ବଡ଼ ବାବୁଙ୍କ ବସାକୁ···

ଅଭୟ—କାହିଁକି ?

ଅନାଦ୍ଧ—ମା' କହିଲେ ତାଙ୍କୁ ଡାକି ଆଣିବ—

ଅଭୟ—ସେ କାହିଁକି ଆସିବେ ?

ଅନାଦ୍ଧ—ମୁଁ ତ ଜାଣି ନାହିଁ···

ଅଭୟ—ଆଚ୍ଛା ଟିକିଏ ଅପେକ୍ଷା କର, ପରେ ଯିବୁ ।

( ଅନାଦ୍ଧ ଭିତରକୁ ଗଲ । ମାୟା ପୁଣି ଆସିଲ )

ପ୍ରକାଶ—ମାୟା—( ମାୟା ସିଧା ଡାକ୍ତର ବାବୁଙ୍କ ପାଖକୁ ଆସିଲା)

ମାୟା—ଶୁଣନ୍ତୁ ଡାକ୍ତର ବାବୁ । ଆପଣ ଯଦି ଭାବୁଥାନ୍ତି ଯେ ଅପରେସନ୍ ଛଡ଼ା ଅନ୍ୟ ଉପାୟ ନାହିଁ, ତେବେ···

ଡାକ୍ତର—ତେବେ ?

ମାୟା—ଆପଣଙ୍କର ଆଉ ଏଠିକି ଆସିବା ଉଚିତ ନୁହେଁ ।

ପ୍ରକାଶ—ମାୟା !!!

ମାୟା—ହଁ ଡାକ୍ତର ବାବୁ । ଅଶୋକର ଚିକିତ୍ସା ପାଇଁ ମୁଁ ଅନ୍ୟ ବ୍ୟବସ୍ଥା କରିବ ।

ଡାକ୍ତର—କଥାଟାକୁ ମୁଁ କିନ୍ତୁ ଠିକ୍ ଓଲଟା ଦିଗରୁ ଭାବୁଛି । ଚିକିତ୍ସାର ଅନେକ ଉପାୟ ଅଛି ମୁଁ ଜାଣେ । କିନ୍ତୁ ସେ ସମସ୍ତ ବୋଧହୁଏ ଆଉ ନାହିଁ ।

ମାୟା—ଅଛି କି ନାହିଁ ସେ କଥା ମୁଁ ଜାଣେ । ଆପଣ ଯା'ନ୍ତୁ—

( ଗୋଟାଏ ଉତ୍ତେଜନାରେ ମାୟାର ସର୍ବାଙ୍ଗ ଥରୁଥାଏ )

ପ୍ରକାଶ—ମାୟା ! କାହାକୁ ତମେ ଏ କଥା କହୁଚ···

ଡାକ୍ତର—ମୁଁ ଏଥିରେ ଆଦୌ ଅପମାନିତ ହେବିନି ମାଉସୀ ଦେବୀ, ଏ ପରିବାର ପ୍ରତି ମୋର ଯେଉଁ କର୍ତ୍ତବ୍ୟ ଅଛି—ସେଇ ଦୃଷ୍ଟିରୁ ମୁଁ ଆପଣଙ୍କୁ ସତର୍କ କରିଦେଇ ଯାଉଛି । ଆପଣ ଏଇ ଘଣ୍ଟାକ ଭିତରେ ଅଶୋକକୁ ନେଇ କେବିନକୁ ଆସନ୍ତୁ···ମୁଁ ସେଠି ଅପେକ୍ଷା କରିବି । (ଚାଲିଗଲେ)

ପ୍ରକାଶ—ଡାକ୍ତର ବାବୁ···ଡାକ୍ତର ବାବୁ···( ଡାକ୍ତର ଫେରିଲେ ନାହିଁ ) ଅଭୟ ! ତୁ ଟିକିଏ ଗାଡ଼ିଟା ନେଇ ଡାକ୍ତର ବାବୁଙ୍କୁ ଛାଡ଼ି ଦେଇ ଆ ।

ଅଭୟ—ଆଚ୍ଛା । (ଚାଲିଗଲା)

ପ୍ରକାଶ—ମାଉସୀ ! ଏ ତୁମେ କଣ କରୁଚ ମାଉସୀ !

ମାଉସୀ—କିଏ କଣ କରୁଚି !! ମୋ ପୁଅ ଉପରେ ତାଙ୍କର କି ଅଧିକାର ଅଛି ଯେ ସେ ମତେ ଧମକ ଦେଇ ଚାଲିଯିବେ—

ପ୍ରକାଶ—ମୁଁ ଆଜି ବୁଝୁଚି ମାଉସୀ···ଯେ କି ଭୁଲ ଆମେ କରି ଆସିଚୁ । ସ୍ନେହ, ମାୟା, ମମତା ଏ ସବୁର ଗୋଟାଏ ସୀମା ଅଛି । କିନ୍ତୁ ଅଶୋକ ପାଇଁ ଆମେ ସେ ସବୁକୁ ଟପି ଯାଇଚୁ । ଏମିତି କି ସେ ମଣିଷ ହୋଇ ଗଢ଼ା ହେଉଚି କି ପଶୁ ହୋଇ ଗଢ଼ା ହେଉଚି, ଏ କଥା ଚିନ୍ତା ପାଇଁ ନ ଭାବି— ସ୍ନେହର ସୁନା-ଖୋଳ ଭିତରେ ଆମେ ତାକୁ ବଢ଼ାଇ ଆଣିଚୁ । ତା'ର ଭବିଷ୍ୟତ ଆଜି ଆମେ ଭାବିବୁ ନାହିଁ ତ ଭାବିବ କିଏ ?

ମାଉସୀ—ସବୁ ଜାଣି, ଶୁଣି, ବୁଝି ତମେ ଏ କଥା କହି ପାରୁଚ ?

ପ୍ରକାଶ—ତମେ ତେବେ ଚାହଁ କଣ ମାଉସୀ ?

ମାଉସୀ—ମୁଁ ଠିକ୍ ସେଇ ପ୍ରଶ୍ନ ତୁମକୁ ପଚାରୁଚି—ତମେ କଣ ଅଶୋକକୁ ବଞ୍ଚାଇବାକୁ ଚାହଁନା—?

ପ୍ରକାଶ—ମାୟା !

ମାୟା—ମୁଁ ପାରିବିନି – ପାରିବିନି – ମୁଁ ବଞ୍ଚିଥିବାଯାଏ, ଅଶୋକକୁ କେବେ ହେଲେ କେଉଁଠିକୁ ପଠାଇବି ନାହିଁ –

ପ୍ରକାଶ—ମୁଁ ତମର କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ ମାୟା – । ଅଶୋକକୁ ଯିବାକୁ ହେବ ।

ମାୟା—କଣ ! ତମେ ତାକୁ ଜୋର୍ କରି ନେଇଯିବ ?

ପ୍ରକାଶ—ତମେ ଯେ ମତେ ବାଧ୍ୟ କରୁଚ ତାକୁ ଜୋର କରି ନେଇ ଯିବାକୁ ।

ମାୟା – କାହିଁକି ? କାହିଁକି ? ମୁଁ କଣ ଅଶୋକର କେହି ନୁହେଁ ? ଏ ଘରେ କ'ଣ ମୋର କିଛି ଅଧିକାର ନାହିଁ ? ତମ ପାଖରେ ମୋର କିଛି ମୂଲ୍ୟ ନାହିଁ ?

ପ୍ରକାଶ—ଏ ସବୁ ତମେ କଣ କହି ଯାଉଚ ମାୟା !! ତମେ କ'ଣ ସ୍ଥାନ କାଳ ପାତ୍ର କିଛି ବୁଝି ପାରୁ ନାହଁ ? ତମର କ'ଣ ଭଲମନ୍ଦ···

ମାୟା—ବେଶ୍ । ବାପର ଅଧିକାରରେ ତମେ ଯଦି ତାକୁ ଯମ ଦ୍ୱାରକୁ ଠେଲି ଦେବାକୁ ଚାହଁ, ତେବେ ଦିଅ···ଅଶୋକ ଅଶୋକ । ( ଡାକି ଡାକି ମାୟା ଉପରକୁ ଚାଲିଗଲା । ବାହାରୁ ଆସିଲା ଅଭୟ । )

ଅଭୟ—କଣ ହେଲା ?

ପ୍ରକାଶ—ହବାର ଆଉ ଅଛି କଣ ? ଡାକ୍ତର ବାବୁଙ୍କୁ କେଉଁଠି ଛାଡ଼ିଲୁ ?

ଅଭୟ—ତାଙ୍କ ଘରେ······

ପ୍ରକାଶ—ତାଙ୍କ ମନରେ ଖୁବ୍ ଦୁଃଖ ହୋଇଚି ନା –

ଅଭୟ—ଦୁଃଖ ସୁଖର କେଳ ଏ ନୁହେଁ । ସେ ଆଦୌ ଦୁଃଖ କର ନାହାନ୍ତି—

ବିକାଶ—ଆଉ କିଛି କହିଚନ୍ତି ?

ଅଭୟ—କହିଚନ୍ତି···ମାନେ ? ସେ ଅପେକ୍ଷା କରି ବସିଚନ୍ତି । ଆଜ ରାତି ଭିତରେ ଅଶୋକକୁ କେବିନ୍‌କୁ ନେବାକୁ ହେବ···

ବିକାଶ—ଅସମ୍ଭବ ।

ଅଭୟ—କିଏ କହୁଚି ଏ କଥା ? ନୂଆ ଡୋକ୍ତର ନା ତୁ ?

ବିକାଶ—ତୁ କଣ ବୁଝି ପାରୁନୁ ଅଭୟ ଯେ, ମତେ ପଚାରୁଚୁ ?

ଅଭୟ—ନା, ମୁଁ କିଛି ବୁଝି ପାରୁନି କି ହଜାରେ ଚେଷ୍ଟା କଲେ ସୁଦ୍ଧା କେହି ମତେ କିଛି ବୁଝାଇ ପାରିବେନି—ଏ ଗୋଟାଏ ପିଲା ଖେଳ ପରି କଥା ହେଉଚି···

ବିକାଶ—କିନ୍ତୁ ମୋର ଉପାୟ କ'ଣ କହ ?

ଅଭୟ—ଉପାୟ ଅଛି—ତୋ ନିଜ ମନ ତୁ ସ୍ଥିର କଲୁଣି ?

ବିକାଶ—ମୁଁ ?

ଅଭୟ—ହଁ—ହଁ—ତୁ ନିଜେ କଣ ଚାହୁଁ କହ ?

ବିକାଶ—ସତରେ ଅଭୟ···ମୁଁ ନିଜେ ବୁଝିପାରୁନି ମୁଁ କଣ ଚାହେଁ···ଅଶୋକ ଏ ଅବସ୍ଥାରେ ପଡ଼ିଚି, ମାୟା ତା କଥାରେ ଅଟଳ···

ଅଭୟ—ଆଚ୍ଛା ତୁ କଥାଟାକୁ ମୂଳରୁ ବିଚାର କରି ଦେଖ । ତାଙ୍କ ନିଜ କଥାରୁ ନୂଆ ଡୋକ୍ତରଙ୍କର ଅପେରେସନ୍ ଉପରୁ ଆସ୍ଥା ତୁଟି ଯାଇଚି···ଏଇଆ ନା ?

ବିକାଶ—ହଁ···

ଅଭୟ—ବର୍ତ୍ତମାନ ଦରକାର ପଡ଼ିଲେ ତାଙ୍କ ନିଜ ଗଳାରେ ସେ ଛୁରୀ ଚଳାଇ ପାରନ୍ତି, କିନ୍ତୁ ଅଶୋକକୁ ଛୁଇଁବେ ନାହିଁ···

ପ୍ରକାଶ—ଆରମ୍ଭରୁ ଏଇ କଥା ସେ କହି ଆସୁଛି—

ଅଭୟ—ମୁଁ ମଧ୍ୟ ଆରମ୍ଭରୁ ତାଙ୍କ କଥାରେ ରାଜି । ନୂଆବୋଉ ତାଙ୍କ ବିଶ୍ୱାସକୁ ନେଇ ରହନ୍ତୁ—ଅଶୋକକୁ ସେ ନ ଛାଡ଼ନ୍ତୁ—ସେଥିରେ କିଛି ଯାଏ ଆସେ ନାହିଁ···

ପ୍ରକାଶ—ଅଶୋକ ତେବେ ଭଲ ହେବ କେମିତି ?

ଅଭୟ—ସେଇ କଥା ମୁଁ କହୁଚି ଶୁଣ । ନୂଆବୋଉଙ୍କ ଅଜାଣତରେ ଅଶୋକକୁ କେଉଁଠିକୁ ନେଇ ଯିବାକୁ ହେବ···

ପ୍ରକାଶ—ଅଭୟ !

ଅଭୟ—ଏ କଥା ଶୁଣିଲେ ତୋ ଘରର ବୁକର ପୂଜାଘର ବି ଚମକି ଉଠିବେ—ତୁ ଚମକି ଉଠିବା ବିଚିତ୍ର କଣ ?

ପ୍ରକାଶ—ଏ କଥା ତୁ ଭାବି ପାରୁଚୁ କେମିତି ?

ଅଭୟ—କାରଣ ଆଜି ଦ୍ୱିତୀୟ କଥା ଭାବିବାର ଶକ୍ତି ମୋର ନାହିଁ । ମୁଁ ଜାଣେ, ଏଠି ଆଜି କେହି ଉପସ୍ଥିତ ଥିଲେ ମୋର ଏ ପ୍ରସ୍ତାବ ଶୁଣି ଆମକୁ ପାଗଳ ବୋଲି କୁହନ୍ତା । କିନ୍ତୁ ସବୁ ପାଗଳାମୀର ଶେଷ ଯେଉଁଠି, ସେଠି ଆମର ପାଗଳ ନ ହେଇ ଉପାୟ କଣ ? କିଏ ? ( ଅନାଦି ଆସିଲା ) ଓ ଅନାଦି—କଣ କହୁଚୁ···

ଅନାଦି—ମା କହିଥିଲେ ବଡ଼ ବାବୁଙ୍କୁ ଡାକିବାକୁ ଯିବ ।

ଅଭୟ—(ପ୍ରକାଶକୁ) ତାଙ୍କୁ କାହିଁକି ଡକା ହେଉଚି କହି ପାରିବୁ ?

ପ୍ରକାଶ—ବୋଧହୁଏ ଏଇ ସମ୍ପର୍କରେ ପରାମର୍ଶ କରିବାକୁ—

ଅଭୟ—ସେ ଯେମିତି ଲୋକ, ସେ ଯେ କି ପରାମର୍ଶ ଦେବେ, ଭଗବାନ ଜାଣନ୍ତି ।

ପ୍ରକାଶ—ମା' କଣ କହିଥିଲେ ?

ଅନାଦି—କହୁଥିଲେ—ବଇ ମାମୁଁଙ୍କୁ ଯା କହିବୁ ସେ ଏଇନେ ଆସିବେ ।

ଅଭୟ—ବେଶ୍ ! ତୁ ଯା ବଇମାମୁଁଙ୍କୁ କହିବୁ ସେ କାଲି ସକାଳେ ଆସିବେ—

ଅନାଦି—ଏ ମିଛ କଥାଟା କେମିତି କହିବି ଆଜ୍ଞା ?

ଅଭୟ—ଓଃ !! ଧର୍ମରାଜ ଯୁଧିଷ୍ଠିର । ଏଥିରେ ମିଛ କଥା କ'ଣ ରହିଲା ?

ଅନାଦି—ସେ ଯଦି ପଚାରନ୍ତି—କାଲି ତ ଯିବି—ଆଜି ରାତିରେ ତୁ ଆସି କାହିଁକି ଡାକୁଛୁ—

ଅଭୟ—ଏ କଥା ସେ ପଚାରିବେ ବୋଲି ତୁ ଭାବି ପାରୁଚୁ ତ ? ଆଉ ସେ'ର ଜବାବ୍ କଣ ଦବୁ, ଭାବି ପାରୁନୁ ? ଯା···ଆଉ ଦେଖ···ଆଜି ରାତି ଭିତରେ ଯେମିତି ସେ ନ ଆସନ୍ତି ।

[ଅନାଦିର ପ୍ରସ୍ଥାନ]

ପ୍ରକାଶ—ଅଭୟ ।

ଅଭୟ—କେବେ କୌଣସି କଥାରେ ମତେ ବିଚଳିତ ହେବାର ଭଲ ଦେଖିଚୁ ? ତୁ ଯା···ଅଶୋକ ପାଖରେ ରହିବୁ । ନୂଆବୋଉ ଶୋଇପଡ଼ିଲା ପରେ—

ପ୍ରକାଶ—ନା, ଅଭୟ ମୁଁ ପାରିବିନି—ମାଆ କୋଳରୁ ମୁଁ ଅଶୋକକୁ ନେଇ ଆସି ପାରିବିନି ।

ଅଭୟ—ତୁ ଭୁଲ ବୁଝୁଚୁ—ମା କୋଳରୁ ତୁ ପୁଅକୁ ଆଣିବୁ କେବଳ ତା'ର କୋଳକୁ ପୁଣି ଫେରାଇ ଦେବାକୁ । ତୁ ଯା । କଣ ଆଉ ଭାବୁଚୁ···

ପ୍ରକାଶ—ଏଇ ସାମାନ୍ୟ କଥାଟା ଯେ ଏ ଅବସ୍ଥାରେ ଆସି ପହଞ୍ଚିବ ଏହା ମୁଁ କଳ୍ପନା କରି ପାରି ନ ଥିଲି । ହଁ···ତୁ ? ତୁ ଏଠି ରହିବୁ ତ ?

ଅଭୟ—ଆଉ କୁଆଡ଼େ ଯିବ ? ମୁଁ ଏଇଠି ଅପେକ୍ଷା କରୁଛି । ତୁ···ଯା ।

ବିକାଶ—ତୁ ତ କିଛି ଖାଇନୁ ?

ଅଭୟ—ତମେ ସବୁ ଖାଇଛ ?

ବିକାଶ—ମାମୁଁ ତ ଆଜ ଦିନ ସାରା ବୋଧହୁଏ କିଛି ଖାଇନି ।

ଅଭୟ—ତୁ ମଧ ଖାଇ ନ ଥିବୁ ? ଏ ଅବସ୍ଥାରେ ମୋ ଖାଇବା କଥା ପଚାରୁଛୁ କାହିଁକି ? ଯା···

[ ଧୀରେ ଧୀରେ ବିକାଶ ଉପରକୁ ଉଠିଲା । ଅଭୟ ତାକୁ ଏକ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁ ରହିଥାଏ । ବିକାଶ ଅଦୃଶ୍ୟ ହୋଇଯିବା ପରେ ଅଭୟ ଆସି କାଉଚ୍ ଉପରେ ବସି ସିଗ୍ରେଟ୍ ଧରାଇଲା । ମଞ୍ଚର ଆଲୋକ ନିଷ୍ପ୍ରଭ ହୋଇ ଆସିଲା—ସେଇ ସଙ୍ଗେ ସଙ୍ଗେ ରାତି ଅତିବାହିତ ହୋଇଯିବାର ସଙ୍କେତ-ସୂଚକ ଯନ୍ତ୍ର-ସଙ୍ଗୀତ ଭାସି ଆସିଲା ।···

ସିଗ୍ରେଟ୍ ଶେଷ କରି ଅଭୟ କାଉଚ୍ ଉପରେ ଢୁଳେଇ ପଡ଼ିଛି । ଯନ୍ତ୍ର ସଙ୍ଗୀତ ଚାଲିଥାଏ । ଢଂ ଢଂ ହୋଇ ତିନଟା ବାଜିବାର ଘଣ୍ଟା ଧ୍ୱନି ଶୁଣାଗଲା । ସେଇ ସ୍ୱଳ୍ପାଲୋକରେ ଦେଖାଗଲା ବିକାଶ ଅଶୋକକୁ କାନ୍ଧରେ ପକେଇ ଓହ୍ଲାଇ ଆସୁଛି ।···ପ୍ରାୟ ନିଃଶବ୍ଦରେ ବିକାଶ ଆସି ଅଭୟ ପାଖରେ ଠିଆ ହେଲା । ଅଭୟ ଚମକି ଉଠି ଠିଆହେଲା । ]

ଅଭୟ—କିଏ ? (ଆଲୋକ ସବୁ ଜଳି ଉଠିଲା)···ବିକାଶ !

ବିକାଶ—ସବୁଦିନ ପାଇଁ ମା ହେଇ ରହିବାର ଗୌରବ ମାମୁଁକୁ ଦେଇ ପାରିବି—କେବଳ ଏଇ ଭରସାରେ ତା' କୋଳରୁ ମୁଁ ଅଶୋକକୁ ଛଡ଼ାଇ ଆଣିଛି ।

[ତା' କଣ୍ଠସ୍ୱରରେ ଅପରାଧିର ଭାବ ସୁସ୍ପଷ୍ଟ]

ଅଭୟ—ତୁ କଣ୍ଟ ଭୟ କରନା ବିକାଶ। ମାୟା ଦେବୀ କେବଳ ଗୋଟାଏ ଉଚ୍ଛ୍ୱାସରେ ଭାସି ଯାଇଥିଲେ । ଯା' ଛଡ଼ା ଆମର ଅନ୍ୟ ଉପାୟ ନ ଥିଲା । ···ଅଶୋକ କ'ଣ ଶୋଇ ପଡ଼ିଛି ?

ବିକାଶ—ବିଛଣାରେ ତ ମୋଟେ ଶୋଉ ନ ଥିଲା । ଦୁଇ ଘଣ୍ଟା ହେବ ମୁଁ ଏମିତି ତାକୁ କାନ୍ଧରେ ପକାଇ ବୁଲୁଛି । ମାୟା ଏଇ ବର୍ତ୍ତମାନ ଶୋଇଲା ।

ଅଶୋକ—ବାପା ।

ବିକାଶ—କ'ଣରେ ବାବା ? ହଁ, ଚାଲ ବୁଲିଯିବା । (ଅଭୟକୁ) ଆ-

[ ଦୁହେଁ ବାହାରକୁ ଗଲେ । ବାହାରେ ମୋଟର ଛାଡ଼ିବାର ଶବ୍ଦ । ମଞ୍ଚ ପୁଣି ଅନ୍ଧକାର ହୋଇଗଲା । ସଙ୍ଗେ ସଙ୍ଗେ ଆସିଲା ଝଡ଼ ବତାସର ଶବ୍ଦ । ସେହି ଶବ୍ଦ ଭିତରେ ମାୟାର ଚିତ୍କାର ଶୁଣାଗଲା । ଆଲୋକ ଜଳିଲା ବେଳକୁ ଦେଖାଗଲା ମାୟା ସିଡ଼ି ଉପରେ ଠିଆ ହୋଇଛି । ସେତେବେଳକୁ ରାତି ପାହି ଆସିଲାଣି । ]

ମାୟା—ଅଶୋକ ! ଅଶୋକ !

[ଡାକି ଡାକି ମାୟା ତଳକୁ ଓହ୍ଲାଇ ଆସିଲା । ]

ମାୟା – ଅନାଦି···ଅନାଦି···ଅଶୋକ କାହିଁ ?

[ଅନାଦି ନିଦରୁ ଉଠି ଆସିଲା]

ଅନାଦି—ମୁଁ ତ ଦେଖିନାହିଁ ମା—ସେ ତ ତଳକୁ ଆସି ନାହାନ୍ତି ।

ମାୟା—ଆସି ନାହିଁ ! ଆଉ ତେବେ ଗଲା କୁଆଡ଼େ ?

[ ଡାକି ଡାକି ପୁଣି ଉପରକୁ ଯାଉଥିଲା ବେଳେ ବିକାଶ ବାହାରୁ ଆସିଲା ]

ବିକାଶ—ମାୟା !

ମାୟା—ତମେ ଏତେବେଳେ କୁଆଡ଼େ ଯାଇଥିଲ ? ଅଶୋକ କାହିଁଗଲା ?

ବିକାଶ—ଅଶୋକ ଏଠି ନାହିଁ ମାୟା ।

( ମାୟା ଉପରେ ଯେମିତି ବଜ୍ରପାତ ହେଇଛି )

ମାୟା—ନାହିଁ !!!

ବିକାଶ—ମୁଁ ତାକୁ କେବିନକୁ ପଠେଇ ଦେଇଛି । (ମାୟା ଯେପରି ଜ୍ଞାନଶୂନ୍ୟ ହେଇ ବିକାଶ ନିକଟକୁ ଛୁଟିଗଲା । ସେ ହୁଏତ ପଡ଼ି ଯାଇଥାନ୍ତା, କିନ୍ତୁ ବିକାଶ ମାୟାକୁ ଦୁଇ ହାତରେ ଧରି ଅଟକାଇ ରଖିଲା)

ମାୟା—ସ୍ୱେ ତୁମେ କଣ କଲ ? ମୋ ପାଖରୁ ତୁମେ ତାକୁ ନେଲ କାହିଁକି ? ତାକୁ ତମେ ଆଣିଦିଅ—ଆଣିଦିଅ—ନା-ମୁଁ ନିଜେ ଯାଉଛି । ( ଚାଲି ଯାଉଥିଲା ବେଳେ ବିକାଶ ବାଧା ଦେଲା)

ମାୟା—ମାୟା···

ମାୟା—ନା-ମୁଁ ଯିବି ମୋ ଅଶୋକ ପାଖକୁ, ମୁଁ ଯିବି । ମତେ ଛାଡ଼—ଛାଡ଼ କହୁଚି ( ଜୋରରେ ବିକାଶକୁ ଠେଲି ଦେଇ ଯାଉଥିଲା ବେଳେ ବିକାଶ ପୁଣି ଅଟକାଇଲା )

ବିକାଶ—ମାୟା—ମୋ କଥା ତୁମେ ଶୁଣ ମାୟା—

ମାୟା—ମୁଁ କିଛି ଶୁଣିବି ନାହିଁ । ତୁମେ ବାପ ନୁହଁ—ରାକ୍ଷସ । ତୁମେ ତାକୁ ମାରିଦବ···

( ଘରର ପୂଜାରୀ ଚାକର ସବୁ ଆସି ଜମା ହୋଇ ଯାଇଥିଲେ··· ବିକାଶର ଇଙ୍ଗିତରେ ସେମାନେ ଭିତରକୁ ଗଲେ )

ବିକାଶ—ଏ କଥା ତୁମେ କହି ପାରୁଛ ମାୟା ? ତମେ ବି ମତେ ବିଶ୍ୱାସ କରୁନ ?

ମାୟା—ନା । ତମଠୁ ବଳି ଅବିଶ୍ୱାସୀ ଆଉ କେହି ନାହାନ୍ତି । ମତେ ନ କହି ନ ଜଣାଇ ତମେ ତାକୁ ମୋ ପାଖରୁ ନେଇଯାଇଛ । ତମେ ନିଷ୍ଠୁର—ନିର୍ଦ୍ଦୟ—ଜାଣି ଶୁଣି ତାକୁ ତମେ···

ବିକାଶ—ଆଚ୍ଛା ତୁମେ ବର୍ତ୍ତମାନ ଚାହଁ କଣ ? କୁହ ? ତୁମେ ଯିବ ସେଠିକି ?

ମାୟା—ହଁ ମୋତେ ନେଇ ଚାଲ—ମୁଁ ତାକୁ ଫେରେଇ ଆଣିବି, କେତେବେଳୁ ତାକୁ ନେଲଣି ?

( ଏଥର ମାୟା କଣ୍ଠରେ ଅନୁଯୋଗ, ଆଖିରେ ଲୁହ )

ବିକାଶ—ବେଶ୍ ତୁମେ ଯାଅ, ମୁହଁ ହାତ ଧୋଇ ଆସ—

ମାୟା—ନା, ନା, ମୁଁ ଏମିତି ଯିବି ।

ବିକାଶ—ତୁମେ କଣ ଭୁଲି ଯାଉଛ ମାୟା, ତୁମେ କିଏ ?

ମାୟା—ଆଚ୍ଛା (ଭିତରକୁ ଗଲା—ବିକାଶ ସଙ୍ଗେ ସଙ୍ଗେ ଫୋନ ଉଠାଇଲା ) ହଁ···କିଏ ? ଡାକ୍ତର ବାବୁ···ମୁଁ ସେଇ ମାୟା କଥା କହୁଚି । ସେ ଯିବାକୁ ଚାହୁଁଛି—ହଁ, ଏକାବେଳେ ପାଗଳୀଙ୍କ ପରି ହୋଇଗଲାଣି···ନେବି ନାହିଁ ? କିନ୍ତୁ ତାର ଅବସ୍ଥା ଦେଖି ମୋର ଭୟ ହେଉଛି । ଓ—ହଁ ତା ହେଲେ ତାର ଯିବା ଉଚିତ ନୁହେଁ । ଆଚ୍ଛା, ଏଁ···ଅପରେସନ୍ ଘଣ୍ଟାକ ପରେ ହବ ? କାହିଁକି ? (ଡରିଯାଇ) ତା ହେଲେ ଉପାୟ ? ଓ ଆସି ପାରିବେ ? ପାଞ୍ଚ ମିନିଟ ପାଇଁ—ଧନ୍ୟବାଦ···ଦୟାକରି ସଙ୍ଗେ ସଙ୍ଗେ ଆସନ୍ତୁ । (ଫୋନ ରଖି ଦେଲା । ମାୟା ଆସିଲା । )

ମାୟା—ଚାଲ । ଆଉ ଭାବୁଚ କ'ଣ ? ଚାଲ—

ବିକାଶ—ନା ମାୟା, ତୁମେ ଯାଇ ପାରିବ ନାହିଁ ।

ମାୟା—ଯାଇ ପାରିବ ନାହିଁ ? କାହିଁକି ? ମୋତେ ତମେ ଜୋରକରି ଅଟକାଇ ରଖିବ ?

ପ୍ରକାଶ—( ନିରୁତ୍ତର )

ମାୟା—କାହା ପାଖକୁ ଫୋନ କରୁଥିଲ ? ପଚାରୁଚି ପରା—କାହା ପାଖକୁ ଫୋ'ନ କରୁଥିଲ ?

ପ୍ରକାଶ—ଡାକ୍ତରଙ୍କ ପାଖକୁ ।

ମାୟା—ସେ କଣ କହିଲେ ?

ପ୍ରକାଶ—ଡାକ୍ତରଙ୍କ କଥା ତୁମେ ଶୁଣିନ ମାୟା—ତାଙ୍କ ଉପଦେଶ ତୁମେ ରଖିନ । ଅତଏବ ସେ କଣ କହିଲେ ଜାଣି ତୁମର ଲାଭ ନାହିଁ ।

ମାୟା—ମୁଁ ବି ଜାଣିବାକୁ ଚାହେଁନା, ତୁମେ ଖାଲି ମତେ କୁହ ତମେ ଅଶୋକକୁ ଆଣିଦେବ କି, ନା ?

ପ୍ରକାଶ—ତେବେ ସ୍ପଷ୍ଟ କଥା ଶୁଣ ମାୟା—ଅଶୋକର ଅପରେସନ୍ ଏ ପର୍ଯ୍ୟନ୍ତ ହୋଇନି । ବର୍ତ୍ତମାନ ତୁମେ ଗଲେ, ତାକୁ ଡାକ୍ତରଖାନାରୁ ଫେରାଇ ଆଣିପାର । କିନ୍ତୁ ସେ ଡାକ୍ତର ଖାନାରୁ ଆସିବ କାହିଁକି ?

ମାୟା—ସେ କାହିଁକି ଫେରି ଆସିବ ସେ କଥା ମୁଁ ଜାଣେ ।

ପ୍ରକାଶ—ତାହାହେଲେ ଏ କଥା ତୁମେ ଜାଣିରଖ ମାୟା ଯେ ଅଶୋକର ଅବସ୍ଥା ସାଂଘାତିକ, ଏ ଅବସ୍ଥାରେ ତାକୁ ଫେରାଇ ଆଣିଲେ, ସ୍ୱୟଂ ଭଗବାନ ହୁଏତ ତାକୁ ଏ ବିପଦରୁ ବଞ୍ଚାଇ ପାରିବେ ନାହିଁ ।

ମାୟା—ଆଜି ବଞ୍ଚାଇବ ତୁମେ ? ଗୋଟିଏ ନିର୍ଦ୍ଦୟ ହତ୍ୟାକାରୀ ! ତୁମେ କଣ ଭାବୁଛ ମୁଁ ଗୋଟାଏ ସ୍ତ୍ରୀ ଲୋକ ବୋଲି, ତୁମେ ଜୋର୍ କରି ମୋ ପୁଅକୁ ମୋ ପାଖରୁ ଛଡ଼ାଇ ନେବ !

ଅପରେସନ୍ ନାଁରେ ତାକୁ···ନା···ନା ମୁଁ କରାଇ ଦେବି ନାହିଁ···ଅଶୋକର ଅପରେସନ୍ ମୁଁ କରାଇ ଦେବି ନ—
( ଫୋନ୍ ପାଖକୁ ଗଲେ )

ବିକାଶ—କ'ଣ କରୁଛ ମାମ୍ମା ! କାହା ପାଖକୁ ଫୋନ୍ କରୁଛ ?
( ବିକାଶ ବାଧା ଦେଲା )

ମାମ୍ମା—ଆଃ ଗୁଡ଼ ଗୁଡ଼, ଜହ୍ନତ—ଗୁଡ଼···
[ ମାମ୍ମା ଫୋନ୍ ସମ୍ଭେତ ଷ୍ଟାଣ୍ଡକୁ ତଳକୁ ପକାଇ ଦେଲେ ]

ବିକାଶ—ଏ ସବୁ କଣ ହେଉଛି ମାମ୍ମା ?

ମାମ୍ମା—ତୁମେ ମତେ ଏଠି ରଖାଇ ଦବନାହିଁ । ଅଶୋକକୁ ତୁମେ ନେଇ ଯାଇଛ—ଏ ଘରକୁ ମୁଁ ପୋଡ଼ି ଜାଳି ଧ୍ୱଂସ କରିଦେବି । ଅଶୋକ ନାହିଁ । ଅଶୋକ ଆଉ ଫେରିବ ନାହିଁ । ମୋ କଥା ତମେ କେହି ଶୁଣିଲ ନାହିଁ । ମତେ ଲୁଚାଇ ମୋ ପୁଅକୁ ମୋ ପାଖରୁ ଛଡ଼ାଇ ନେଲ । ( ଚିତ୍କାର କରି ) ଅଶୋକ ! ଅଶୋକ !
( ବାହାରୁ ମୀରା ଆସିଲା, ଏମାନଙ୍କୁ କିଛି ନ କହି ଉପରକୁ ଯାଉଥିଲା )

ବିକାଶ—କୁଆଡ଼େ ଯାଉଚୁ ମୀରା ?

ମୀରା—ଅଶୋକ ପାଖକୁ···

ବିକାଶ—ଅଶୋକ ପାଖକୁ ?

ମୀରା—ହଁ, ଆଜି ରବିବାର—ଆମେ ସବୁ ଜଣ ଭୋଜି କରିବାକୁ ଯିବୁ । ସେ କାହିଁ ?

ବିକାଶ—ସେ ତ ଘରେ ନାହିଁ ।

ମୀରା—କୁଆଡ଼େ ଯାଇଚି ?

ମାୟା— କୁହ ତାକୁ ଅଶୋକ କୁଆଡ଼େ ଯାଇଚ, କୁହ ? ତୁ ଫେର ଯା ମୀରା—ଅଶୋକ ନାହିଁ, ଅଶୋକକୁ ତା ବାପା ମାର ଦେଇଛନ୍ତି । ( ଜୋରରେ କାନ୍ଦୁ ଥାଏ )

ବିକାଶ—ମାୟା—

ମାୟା—ହଁ ତୁ ଫେରଯା' ମୀରା, ଅଶୋକ ଆଜ ଆସିବ ନାହିଁ । ଆଜ ସେ ଫେରିବ ନାହିଁ ।

( ଦୁଃଖରେ ଘାଗ ପଡ଼ିଲା ପରି କାଉଚ୍‌ର ଗୋଟିଏ କଣରେ ଢଳି ପଡ଼ିଲା )

ମୀରା—ଅଶୋକର କଣ ହୋଇଛନ୍ତି ମଉସା ?

ବିକାଶ—ତା ଦେହ ଖରାପ ହୋଇଛନ୍ତି, ତୁ ଯା କାଲ ଆସି ଖେଳବୁ ।

( ମୀରାକୁ ସାଙ୍ଗରେ ନେଇ ବାହାରକୁ ଯାଇ ପୁଣି ସଙ୍ଗେ ସଙ୍ଗେ ମାୟା ପାଖକୁ ଫେର ଆସିଲା )

ବିକାଶ—ମାୟା, ମାୟା ! !

( ମାୟା ଗୋଟାଏ ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ି ରହିଥାଏ )

ମାୟା—(କ୍ଷୀଣ ସ୍ୱରରେ) ଅଶୋକକୁ ତୁମେ ନେଇଗଲ ? ମତେ ଲୁଚାଇ ତାକୁ ନେଇଗଲ ?

(ସ୍ୱର କ୍ଷୀଣରୁ କ୍ଷୀଣତର ହୋଇ ଯାଉଥାଏ ।

ବିକାଶ—ଅନାଦ ! ଅନାଦ ! ( ଅନାଦ ଆସିଲା )

ଅନାଦ—କଣ ବାବୁ ?

ବିକାଶ—କଣ ଆଉ ହେବ ! ଅଶୋକ ସେଠି ପଡ଼ିଚ--ଏଠି ମାୟା ଅବସ୍ଥା ଏମିତି ।

ଅନାଦ—କାଲଠୁ ଗାଧୁଆ ନାହିଁ—ଖିଆ ନାହିଁ ।

ପ୍ରକାଶ—ତୁ ଯା ଗାଧୁଆ ଘରେ ପାଣି ଓ ଲୁଗା ରଖ । ( ଅନାଦି ଭିତରକୁ ଗଲା ।) ମାୟା--ମୋ କଥା ଶୁଣ ମାୟା । ଟିକଏ ସ୍ଥିର ହୁଅ, ମୋ କଥା ଶୁଣ···

(ଗାଡ଼ି ପହଞ୍ଚିବାର ଶବ୍ଦ ଶୁଣାଗଲା ) ଡାକ୍ତର ବାବୁ ଆସିଲେ ବୋଧ ହୁଏ । (ଡାକ୍ତର ଆସିଲେ) ଆସନ୍ତୁ ଡାକ୍ତର ବାବୁ— ମାୟାକୁ ବୁଝାଇ କୁହନ୍ତୁ, ଅଶୋକ କେମିତି ଅଛି--

ଡାକ୍ତର—କେମିତି ଅଛି କହିବାର ବେଳ ତ ଆସି ନାହିଁ--କିନ୍ତୁ ସେ ଚିନ୍ତା ତ ଆମର ।

ପ୍ରକାଶ—ଡାକ୍ତର ନିିପାଠୀ ସେଠି ଅଛନ୍ତି ?

ଡାକ୍ତର—ସମସ୍ତେ ଅଛନ୍ତି ( ମାୟାକୁ ଲକ୍ଷ୍ୟ କରି ) ତାଙ୍କର କ'ଣ ହୋଇଛି ।

ପ୍ରକାଶ—ମାୟା, ଏଇ ଦେଖ ମାୟା, ଡାକ୍ତର ବାବୁ ଆସିଛନ୍ତି ।

ମାୟା—(ଚମକି ପଡ଼ିଲା ପରି) କିଏ ?

ପ୍ରକାଶ—ଡାକ୍ତର ବାବୁ ।

ମାୟା—ଅଶୋକକୁ ଆଣିଛନ୍ତି—ଅଶୋକ କାହିଁ ଡାକ୍ତର ବାବୁ, ମୋ ଅଶୋକ କାହିଁ ?

ଡାକ୍ତର—ଆପଣ ଦୁର୍ବଳ ହୋଇ ପଡ଼ିଛନ୍ତି—ସ୍ଥିର ହୋଇ ବସନ୍ତୁ ।

ମାୟା– ମୁଁ ଦୁର୍ବଳ ହୋଇ ପଡ଼ିଛି ବୋଲି ଆପଣ ଅଶୋକକୁ ମୋ ପାଖରୁ ଜୋର କରି ନେଇଯିବେ । ଚାଲନ୍ତୁ—ମୁଁ ତାକୁ ନେଇ ଆସିବି--ତାର ଅପରେସନ ହବ ନାହିଁ ।

ଡାକ୍ତର—ଦେଖନ୍ତୁ । ମୋର ବର୍ତ୍ତମାନ ଏଠାକୁ ଆସିବାର କଥା ନୁହେଁ । କେବଳ ଆପଣଙ୍କ ଭୁଲ ଭାଙ୍ଗିବା ଆଶାରେ ମୁଁ ପୁଣି ଥରେ କହୁଛି, ଅପରେସନ୍ ଛଡ଼ା ଅନ୍ୟ ଉପାୟ ନାହିଁ ।

ମାୟା—ଆପଣ ଚୁପ କରନ୍ତୁ, ଅଶୋକଙ୍କୁ ଛୁଇଁବାର ଅଧିକାର ଆପଣଙ୍କର ନାହିଁ ।

ବିକାଶ—ମାୟା···

ଡାକ୍ତର—ମୁଁ ଅନୁନୟ କରୁଚି ମାୟାଦେବୀ । ମୋ କଥା ମାନି ଧୀର ସ୍ଥିର ହୋଇ ମୋ ସାଙ୍ଗରେ ଆସନ୍ତୁ । ଅଶୋକଙ୍କୁ ଦେଖିବେ—ତାର ସେବା କରିବେ···ନଚେତ୍ ଏଇ ଅବସ୍ଥାରେ ଆପଣଙ୍କୁ ଏଠି ରହିବାକୁ ହେବ ।

ମାୟା—କି ନିର୍ଦ୍ଦୟ ଆପଣ । ଆପଣ ଡାକ୍ତର ନୁହନ୍ତି—ଆପଣ ଗୋଟାଏ ଖୁନୀ—ଗୋଟାଏ ଡକାୟତ । ଆପଣ ଯାଆନ୍ତୁ, ଚାଲି ଯାନ୍ତୁ !

[ ମାୟା ଏକାବେଳକେ ବାହ୍ୟଜ୍ଞାନଶୂନ୍ୟ ହୋଇ ପଡ଼ିଛି । ହାତ ପାଖ ଟେବୁଲ ଉପରୁ ଗୋଟାଏ ଫ୍ରେମ-ବନ୍ଧା ଫଟୋ ଉଠେଇ ଆଣି କଥା କହିବା ସଙ୍ଗେ ସଙ୍ଗେ ଡାକ୍ତରଙ୍କ ଉପରକୁ ଫୋପାଡ଼ିବାକୁ ଗଲାବେଳେ ଦେଖି ପାରିଲା ଯେ ସେଇଟା ଅଶୋକର ଫଟୋ । ଫଟୋଟାକୁ ଛାତିରେ ଯାକି ଧରି ଜୋରରେ କାନ୍ଦି ଉଠିଲା । ]

ବିକାଶ—(ମାୟାକୁ ବସାଇ ଦେଇ) ଡାକ୍ତର ବାବୁ···ପ୍ଲିଜ୍··· ଡାକ୍ତର ବାବୁ ।

[ ତା କଥାରେ ଅନୁଯୋଗ ଯେ ଡାକ୍ତର ସେମାନଙ୍କୁ କ୍ଷମା କରନ୍ତୁ, ଡାକ୍ତର କିନ୍ତୁ ପ୍ରକୃତରେ ଆଦୌ କ୍ଷୁବ୍ଧ ନୁହନ୍ତି । ]

ଡାକ୍ତର—ମୁଁ ଯାଉଚି ମାୟାଦେବୀ--କିନ୍ତୁ ଆପଣ ଦେଖିବେ ମୋ ହାତରେ ଛୁରିଟା ଡକାଏତ୍‌ର ଛୁରି ନା ଡାକ୍ତରର ଛୁରି !··· (ବିକାଶକୁ) ତାଙ୍କ ପ୍ରତି ଦୃଷ୍ଟି ରଖିଥିବେ । (ଚାଲିଗଲେ)

ମାୟା—ଡାକ୍ତର ବାବୁ···ମୋ’ ଅଶୋକକୁ ଫେରାଇ ଦେଇ ଯାଅ ···ଡାକ୍ତର ବାବୁ···

[ଡାକ ଡାକ ସଦର ଦରଜା ଆଡ଼କୁ ଛୁଟି ଯାଉଥିଲା ବେଳେ ବିକାଶ ତାକୁ ଅଟକାଇଲା । ]

ବିକାଶ—ମାୟା (ମାୟା କାନ୍ଦ କାନ୍ଦ ଲେଟି ପଡ଼ୁଥାଏ)

—ଦ୍ୱିତୀୟ ଅଙ୍କ ଶେଷ—



# ତୃତୀୟ ଅଙ୍କ

[ ପ୍ରବର ସେଇ କକ୍ଷାଦୁଇଦନ କଟି ଯାଇଚ । ସମୟ—ସକାଳ । ବିକାଶ ଯେମିତ ଏକ ଅସହାୟ ଅବସ୍ଥାରେ ସୋଫା ଉପରେ ଶୋଇ ପଡ଼ିଛି । କକ୍ଷଟିରେ ଆଉ କେହ୍ବ ନାହିଁ । କେବଳ ଅନ୍ତରାଳରୁ ଭାସି ଆସୁଚ ଯନ୍ତ୍ର-ସଙ୍ଗୀତର କରୁଣ ଆଳାପ । ତୃତୀୟ ଅଙ୍କର ପର୍ଦ୍ଦା ଅପସାରିତ ହେବା ପରେ କେତେକ ମୂହୂର୍ତ୍ତ ଏମିତ କଟିଗଲ । ]

ବିକାଶ—(ହଠାତ୍ ଉଠି) ଅନାଦ, ଅନାଦ—(ଅନାଦ ଆସିଲ ।)

ଅନାଦ—ଏଇଠି ଏମିତ ଶୋଇ ପଡ଼ିଥିଲେ—

ବିକାଶ—ହଁ ଅନାଦ···ମୁଁ ଶୋଇ ପଡ଼ିଥିଲି ।···ମାୟା କାହିଁ ?

ଅନାଦ—ସେ ଉପରେ ଶୋଇଚନ୍ତି···

ବିକାଶ—ଶୋଇଚ ତ ?

ଅନାଦ—ହଁ ।

ବିକାଶ—(ଘଣ୍ଟା ଦେଖି) ମୁଁ ଏତେ ସମୟ ଶୋଇ ପଡ଼ିଲି ?

ଅନାଦ—ଚ୍ଚ ଆଣିବ ବାବୁ ?

ବିକାଶ—ଚ୍ଚ !! (ଅନାଦ ଭିତରକୁ ଯାଇ ସଙ୍ଗେ ସଙ୍ଗେ କପେ ଚ୍ଚ ଘେନ ଆସିଲ । )

ବିକାଶ—ଅନାଦ--

ଅନାଦ—ବାବୁ ।

ବିକାଶ—ମୁଁ କଣ କରିବି କହିଲୁ ଅନାଦ ? ଏମିତି ଆଉ କେତେଦିନ ଚାଲିବ ?

ଅନାଦ—ମା'ଙ୍କ କଥା କହୁଚନ୍ତି ତ ?

ବିକାଶ—ହଁ ··· ଚାରି ଦିନ ହେଇଗଲା; ସେ କିଛି ଖାଉ ନାହାଁ ।
ସେ ବଞ୍ଚିବ କେମିତି ?

ଅନାଦ—(ନିରୁତ୍ତର)

ବିକାଶ—ଅନାଦ ! ମୁଁ ଭାବୁଚି ଅନାଦ, ତୋ କଥା ସେ ରଖିବ ।

ଅନାଦ—ମୋ କଥା ?

ବିକାଶ—ହଁ···ତୋତେ ସେ ଶ୍ରଦ୍ଧା କରେ—ବିଶ୍ୱାସ କରେ—
ତୁ କହିଲେ ହୁଏତ ସେ ଖାଇବ···।

ଅନାଦ—ମୁଁ କଣ କହିନ ବାବୁ । ଦି'ବେଳା ତ କହୁଚି—

ବିକାଶ—ନାହିଁ ଅନାଦ···ତୁ ଯାଇ ତାକୁ ଉଠା । ତାକୁ ସବୁକଥା
ବୁଝେଇ ଦେ । ମୋ କଥା ତ ସେ ଆଦୌ ଶୁଣୁନି । ମୋ
ଉପରୁ ତା'ର ସବୁ ବିଶ୍ୱାସ ତୁଟି ଯାଇଚି···। ମତେ ଦେଖିଲେ
ଯେମିତି ଏକାବେଳକେ ସେ ରାଗରେ—ଘୃଣାରେ ଜଳି
ଯାଉଚି ।

ଅନାଦ—ସତ କହୁଚି ବାବୁ—ଏ ସବୁ ଢଙ୍ଗ ଢାଙ୍ଗ ଦେଖି ମୋ'
ମନ ଫିକା ପଡ଼ିଗଲାଣି । କଥା ପଦେ କହିବାକୁ ବି ମୁଁ
ଭରସି ପାରୁନି···

ବିକାଶ—ମୁଁ ଜାଣେ ଅନାଦ···ଆମ ସଙ୍ଗେ ସଙ୍ଗେ ତମେ ସବୁ
ବି ଏ ଅବସ୍ଥା ଭୋଗୁଚ । କିନ୍ତୁ ମୁଁ କଣ କରିବି କହ···

ଅନାଦ—ମୁଁ କହୁଚି ବାବୁ—ମା'ଙ୍କୁ ଆପଣ କୁନି ବାବୁଙ୍କ ପାଖକୁ
ନେଇ ଚାଲ ।

ପ୍ରକାଶ—ଅନାଦ୍ଧ !

ଅନାଦ୍ଧ—ମୋ କଥା ମାନ ବାବୁ । ସୁରଞ୍ଜନ ହେଇଗଲାଣି···
କୁନ ବାବୁଙ୍କ ଦେହ ତ ଭଲ ହୋଇ ଆସିବଣି - ତାଙ୍କୁ
ସେଠିକି ନେଇ ଚାଲ । ନଇଲେ ବାବୁ···ମୁଁ ଯାହା ଦେଖୁଚି,
ସେ କାହାରି କଥା ଶୁଣିବେ ନାହିଁ । ଏମିତି ନ ଖାଇ ନ ପିଇ
ପଡ଼ି ରହିବେ । ଠାକୁରେ ଜାଣନ୍ତି କଣ ତାଙ୍କ ଅବସ୍ଥା ହେବ !

ପ୍ରକାଶ—ତୁ ତ ଭଲକରି ଜାଣୁ ଅନାଦ୍ଧ, ଡାକ୍ତର ବାରମ୍ବାର ମନା
କରି ଯାଇଛନ୍ତି—

ଅନାଦ୍ଧ—ଡାକ୍ତର ଖାଲି ଏଇ କଥାକୁ ମନା କରି ଦେଇ ଗଲେ !!
ଏଣେ ଯେ ଗୋଟାଏ ଲୋକ କୋଉଠୁ ଆସି କୋଉଠି ରହିଲାଣି,
ସେ କଥା ବୁଝୁଛି କିଏ ? ଏ କଥା କୋଉ ଡାକ୍ତରୀ ପାଠରେ
ଲେଖା ହେଇଚି ଯେ ଛୁଆଟାକୁ ନେଇ ଯାଇ ମା' ପାଖରୁ
ଲୁଚେଇ ରଖିବ ?

ପ୍ରକାଶ—ଅନାଦ୍ଧ ?

ଅନାଦ୍ଧ—ମତେ ତେମେ ବାବୁ ମାରି, ହାଣ, ଯାହା କରି ପଚ୍ଛକେ,
ମୁଁ କହିବି ଏଇଟା ଠିକ୍ ବିଗ୍ଚାର ହେଲା ନାହିଁ । ଯୋଉ
ମା' ଦଣ୍ଡେ କୁନ ବାବୁକୁ ନ ଦେଖିଲେ ପାଗଳ ହେଇ-
ଯାଆନ୍ତି—ସିଏ ରହିଲେ ଠାଏ—ଆଉ କୁନ ବାବୁ ରହିଲେ
ଠାଏ—ଏଇଟା କ'ଣ ଉଚିତ ହେଲା ?

ପ୍ରକାଶ—ତୁ ଏକଥା କହି ପାରୁଚୁ ଅନାଦ୍ଧ, ମାୟାକୁ ଏ ଦୁଃଖ
ଦେବି ବୋଲି ମୁଁ ଅଶୋକକୁ ତା' ଠାରୁ ଛଡ଼େଇ ନେଇଚି !!
ଅଶୋକ ମୋ'ର ପୁଅ—ମାୟା ମୋ'ର ସ୍ତ୍ରୀ—କାହା ପାଇଁ
ମୁଁ କାହାକୁ କଷ୍ଟ ଦେବି ? କାହା ପ୍ରତି ଅବିଗ୍ଚାର କରିବି ?
ଏ କଥା କଣ କେହି ତୁମେ ବୁଝିବ ନାହିଁ ?

ଅନାଦ—ମୁଁ କ'ଣ ଦେଖୁ ନାହିଁ ବାବୁ···ତମେ ଏବେ କୋଉ ଭଲରେ ଚଳୁଚ ? ତମ ଅବସ୍ଥା ଆସି କ'ଣ ହେଲାଣି ? ହେଲେ ବାବୁ—ସେ ପର ମା···ମା' ମନ ଆଉ କାହିଁ ଥାଏ ?

ପ୍ରକାଶ—ମୁଁ ସବୁ ଜାଣେ ଅନାଦ—ସବୁ ବୁଝେ । ହେଲେ ଏ କଥା ବି ତୁ ଜାଣିଥା ଯେ, ହଜାରଟା ମା'ର ସ୍ନେହ-ମମତା ଅଶୋକର ବେମାରି ଭଲ କରି ପାରନ୍ତା ନାହିଁ । ମାୟାର ଏ ଅବସ୍ଥାରେ ଯଦି ଅଶୋକ ପାଖରେ ତାକୁ ଛାଡ଼ି ଦିଆଯାଏ, ତେବେ ଭଗବାନ ଜାଣନ୍ତି ଅଶୋକର ଅବସ୍ଥା କ'ଣ ହବ ?

ଅନାଦ—କିଛି ହବ ନାହିଁ ବାବୁ । କୁନି ବାବୁଙ୍କୁ ସେଇ ଭଗବାନ ସାହା । ଆପଣ ଏଣେ ମା'ଙ୍କ କଥା ବୁଝନ୍ତୁ । ତାଙ୍କୁ ଥରେ ସେଠିକି ନେଇ ଯାଆନ୍ତୁ । ନଇଲେ ତାଙ୍କ ଅବସ୍ଥା ଯେ କ'ଣ ହବ···

ପ୍ରକାଶ—ଅବସ୍ଥା ଯାହା ହେଲେ ବି ଡାକ୍ତର ନ କହିବା ଯାଏ ମାୟା ସେଠିକି ଯାଇ ପାରିବ ନାହିଁ । ତୁ ଯା···

ଅନାଦ—ଭଲ କଥା ବାବୁ—ତମ ଇଚ୍ଛା ଯାହା ତମେ କର । ମୁଁ ଗୁଡ଼କର ବାକର ଲୋକ—ଯାହା ଦେଖିଲି ତାହା କହିଲି । ତମ ସ୍ତ୍ରୀ—ତମ ପୁଅ—ତାଙ୍କ ଭଲ ମନ୍ଦ କ'ଣ ତମଠୁ ମୁଁ ବେଶୀ ଦେଖିବି ? ହେଲେ ବାବୁ···

ପ୍ରକାଶ—କଣ ପୁଣି କହୁଚୁ ?

ଅନାଦ—ମୁଁ ଏ ଘରେ ଆଉ ଚଳି ପାରିବି ନାହିଁ ।

ପ୍ରକାଶ—ଚଳି ପାରିବୁ ନାହିଁ ?

ଅନାଦ—ନାହିଁ ବାବୁ—ମୁଁ ହାତ ଯୋଡ଼ି କହୁଚି, ମତେ ତେମେ ବିଦା କରି ଦିଅ । ଘରର ଯେ ଲକ୍ଷ୍ମୀ, ତାଙ୍କର ତ ଏ ଅବସ୍ଥା —ଏ ଘରେ ଆଉ ଚଳିବ କିଏ ? ଆସି ରହି ରହି ଦିନ

ହୋଇଗଲା; ତାଙ୍କ ବାଟରେ ସିଏ – ଆପଣଙ୍କ ବାଟରେ ଆପଣ !
ଏଠି ଆଉ ଚଳିବ କିଏ ?

ପ୍ରକାଶ—(ରାଗି) ବେଶ୍ ନ ଚଳିବୁ ତ, ତୋ ଇଚ୍ଛା ଯୁଆଡ଼େ ତୁ ଚାଲିଯା – ଏଇକ୍ଷଣି ଚାଲି ଯା – ଯା କହୁଚି – (ଅଭୟ ଆସିଲା)

ଅଭୟ—କ'ଣ ହୋଇଚି ? କ'ଣ ହୋଇଚି ପ୍ରକାଶ ? ଅନାଦି ! କଥା କଣ ?

ପ୍ରକାଶ – ତା'ର ସାହସ ଦେଖୁଚୁ ? ଅଭୟ । ସେ ମୋତେ ଧମକ ଦେଉଚି ଯେ, ସେ ଏ ଘରେ ଚଳି ପାରିବ ନାହିଁ । ସେ କୁଆଡ଼େ ମୋତେ ଶାସନ କରିବ !!! ପାଜି – ବଦ୍‌ମାସ୍...

ଅଭୟ – ଟିକିଏ ଥୟ ଧର ପ୍ରକାଶ !—ଏମିତି କାହିଁକି ହଉଚୁ ? ଅନାଦି କଣ ଏ ଘରେ ନୂଆ ହୋଇଛି ।

ପ୍ରକାଶ – ତା' ଆଖିରେ କୁଆଡ଼େ ସବୁ ଦୋଷ ମୋ'ର ! ମୁଁ ମାୟା କଥା କିଚ୍ଛି ବୁଝୁ ନି— ମୁଁ ତାକୁ ପସନ୍ଦ କରୁନି – ଆଉ ସେଥିପାଇଁ ସେ ଏ ଘର ଛାଡ଼ି ଚାଲିଯିବ ! – ଯିବୁ ତ ପୁଣି ଠିଆ ହେଲୁ କାହିଁକି ?

ଅଭୟ – ଛି, ଛି ପ୍ରକାଶ – ଏ ସବୁ କଣ ହଉଚି ? ମାୟା ଉପରେ ଅଛି ଯେ, ତା'ର ଯା' ଅବସ୍ଥା – ତୁ ଏମିତି ହେଲେ ଫଳ କ'ଣ ହବ କହିଲୁ ?

ପ୍ରକାଶ—କିନ୍ତୁ ଅଭୟ— ମୁଁ ଏଠି ରହିବି କେମିତି ? ଏଠି ସମସ୍ତଙ୍କ ଆଖିରେ ମୁଁ ଦୋଷୀ – ମୁଁ ସବୁ ଭୁଲ କରିଚି !! କିନ୍ତୁ ତୁ ତ ଜାଣୁ ଅଭୟ – ମୁଁ କଣ କରିଚି – ନ କରିଚି – ?

ଅଭୟ—ହଁ ! ମୁଁ ଜାଣେ – (ଅନାଦିକୁ) ଅନାଦି – ନୂଆବୋଉ କଣ କରୁଚନ୍ତି ?

ଅନାଦି —ଉପରେ ଶୋଇଥିଲେ ତ ।

ଅଭୟ— ତୁ ଶୁଣ ଅନାଦି—ଏଇ ଘରେ ତୋର ସାରା ଜୀବନ ଆସି କଟିଲାଣି । ତୁ ଯଦି ଏମିତି ଅବୁଝା ହଉ—ସବୁ ଆଡ଼କୁ ଆଖି ଦେଇ ନ ଚଳୁ…ତୋ' ମା'ଙ୍କ ଅବସ୍ଥା ତ ଦେଖୁଚୁ—

ଅନାଦି—ଅବସ୍ଥା ଆଉ କଣ ଦେଖିବି ବାବୁ, ଏଠିକା ଢଙ୍ଗ ମୁଁ କିଛି ବୁଝି ପାରୁନି । ମୁଁ ବି ବାବୁ ପିଲାପିଲି ନେଇ ଘର କରିଚି । ମୋ ବୁଆଟା ଏମିତି ହୋଇଥିଲେ ମୁଁ କଣ ତାକୁ ତା' ମା'ଠୁ ଛଡ଼େଇ ନେଇଥାନ୍ତି ? ଏଇ କଥା ତମେ ମତେ କହୁଚ ?

ବିକାଶ—ସେ ମୂର୍ଖଟା କଥା ତୁ ଶୁଣୁଚୁ କାହିଁକି ଅଭୟ ?

ଅଭୟ—ବିକାଶ । କାହାକୁ ତୁ କଣ କହୁଚୁ ? ନିଜ ଲୋକଠୁ ବଳି ଆପଣାର ହୋଇ ସେ ତମ ପାଖରେ ଚଳି ଆସୁଚି…

ଅନାଦି—ଆପଣ କହିଲେ ବାବୁ…ମା'ଙ୍କର ଏ ଅବସ୍ଥା ଦେଖି କାହା ପ୍ରାଣ ଭଲ ନ କାନ୍ଦିବ ?

ଅଭୟ—କିନ୍ତୁ ଅନାଦି, ତୋ'ର ତ ପୁଣି ଏ କଥା ବୁଝିବା ଉଚିତ ଯେ…ଏ ବିପଦ ବେଳେ ତମେ ସମସ୍ତେ ଯଦି ଏମିତି ଅଧୀର ହୋଇ ଉଠିବ, ତେବେ ବିପଦ ନ କମି ବରଂ ବେଳକୁ ବେଳ ବଢ଼ିବ । ତୋ'ର ଏଇ ମା'ଙ୍କୁ ଦେଖ୍—ସବୁ କଥା ସେ ହୁଏତ ଜାଣୁଚନ୍ତି—ଅଥଚ ସେ ଏକାବେଳକେ ପାଗଳୀଙ୍କ ପରି ହୋଇଗଲେଣି…ଏ ଘର ତ ଆଉ ଘର ହୋଇ ରହିବନି…

ଅନାଦି—ମୁଁ ସେଇ କଥା କହୁଚି ବାବୁ—ବୁଆଟାକୁ ଆଖିରେ ଟିକିଏ ଦେଖିପାରୁ ନାହାନ୍ତି ବୋଲି ସିନା—

ଅଭୟ—ମୁଁ ବି ସେ କଥା ବୁଝୁଚି ଅନାଦି । ମା' ତା'ର ପୁଅ ପାଖକୁ ଯିବ—ଏ କଥା ମନା କରିବ କିଏ ? ହେଲେ ତାଙ୍କୁ କ'ଣ କିଏ ଜାଣି ଶୁଣି ସେଠିକି ଛାଡ଼ୁନାହିଁ ? ଅଶୋକର ଘା'

ଏବେ ମଧ୍ଯ ଶୁଖିନ । ଏ ଅବସ୍ଥାରେ ଯଦି ସେ ଅଶୋକ ପାଖକୁ ଯାଇ ସେଠି ଏମିତି କନ୍ଦାକଟା କରନ୍ତୁ, ତା'ହେଲେ ଲାଭ କିଛି ହବନି । ସମସ୍ତଙ୍କର ଭଲ ପାଇଁ ଯାହା କରାଯିବାର କଥା, ତାହାହିଁ କରାଯାଉଛି । ତୁ ଯା — ତୋ କାମ ଦାମ କର । (ଅନାଦି ଚାଲିଗଲା) ଆଚ୍ଛା ବିକାଶ, ତୁ କଣ ଚାହୁଁ ଯେ ଏ ଘରେ ଚାକର ବାକର କେହି ରହିବେ ନାହିଁ ? ସବୁଦିନେ ଏଠି ଏଇ ପାଗଳାମି ଚାଲିଥିବ ···।

ବିକାଶ — ମତେ କ୍ଷମା କର ଅଭୟ — କାହିଁକି କେଜାଣି — ମୋର ସବୁ ଧୈର୍ଯ୍ୟ ଯେମିତି ମୁଁ ହରାଇ ବସିଥିଲି···

ଅଭୟ — ତା'ତ ଦେଖୁଛି । କିନ୍ତୁ ହଠାତ୍ ଆଜି ତୋର ଏମିତି ଅଧୀର ହୋଇ ପଡ଼ିବାର କାରଣ ମୁଁ କିଛି ବୁଝି ପାରୁନି । ଯେତେବେଳେ ସବୁ ବିପଦ ଆସି ତୋ ମଥା ଉପରେ ଭାଙ୍ଗି ପଡ଼ୁଥିଲା ସେ ବେଳ ତ କଟି ଯାଇଛି — ଆଉ ଆଜି ପୁଣି··· ଆଚ୍ଛା — ଛାଡ଼ ସେ କଥା, ନୂଆବୋଉଙ୍କ ଖବର କଣ ? ସେ କେମିତି ଅଛନ୍ତି ?

ବିକାଶ — ଏଇ ସବୁ ଘଟଣାରୁ ତୁ କଣ ବୁଝି ପାରୁନୁ ?

ଅଭୟ — ତୁ କହ ତ — ନୂଆବୋଉ କେମିତି ଅଛନ୍ତି ?

ବିକାଶ — କାଲି ରାତି ସାରା ତାଙ୍କୁ ନିଦ ନ ଥିଲା । ଆଜି ଏଇ ଭୋରରୁ ଶୋଇ ପଡ଼ିଛି । ବେଳେବେଳେ ଅନେକ ସମୟ ଧରି ଚୁପ୍ ହୋଇ ବସି ରହୁଥାଏ — କଣ ଯେମିତି ଭାବୁଛି । ତା ପରେ ହଠାତ୍ ଖୁବ୍ ବିକଳ ହୋଇ କାନ୍ଦି ଉଠେ !! ମୋ ସାଙ୍ଗେ ପଦେ କଥା ବି କହୁନି ।

ଅଭୟ — ଖାଇଛନ୍ତି ?

ବିକାଶ—ତୁ ପାଗଳ ହେଲୁ ଅଭୟ—ଏ ଅବସ୍ଥାରେ ତା'ର ଖିଆ-ପିଆର ପ୍ରଶ୍ନ ଉଠୁଚି କୋଉଠି ?

ଅଭୟ—ମୁଁ ଭଗବାନଙ୍କୁ ଡାକୁଚି  ବିକାଶ—କିମିତି ଦୁର୍ଦ୍ଦିନ କଟିଯାଉ—ନୂଆ-କୋଉଙ୍କ ମୁହଁରେ ପୁଣି ହସ ଫୁଟି ଉଠୁ—ଅଶୋକ ସାଥିରେ ତାଙ୍କର ସେହି ହସ ଖୁସିର ଦିନ ପୁଣି ଫେରିଆସୁ ।

ବିକାଶ—କିନ୍ତୁ ଅଭୟ—ମୋ ର କାହିଁକି ସବୁବେଳେ ଗୋଟାଏ ଆଶଙ୍କା ହଉଚି—

ଅଭୟ—କି ଆଶଙ୍କା ?

ବିକାଶ—ଏ ଯେମିତି ଗୋଟାଏ ଭୀଷଣ ଝଡ଼ ଆସିବାର ପୂର୍ବ ସୂଚନା । କିନ୍ତୁ କୁଆଡ଼ୁ କ ଥାଇ ମାମୁଁ ହୁଏତ ହଠାତ୍ କଣ ନାଇଁ କଣ କରି ବସିବ ।

ଅଭୟ—ଅସମ୍ଭବ ! ଏ ସବୁ ଉଦ୍‌ଭଟ ଚିନ୍ତା ତୋ ମନକୁ ଆଣୁଚୁ କାହିଁକି କହିଲୁ ? ଆଉ ଦିନ ଦି'ଟା ଯାଉ ଦେଖିବୁ, ଅଶୋକ ସମ୍ପୂର୍ଣ୍ଣ ଭଲ ହେଇ ଡାକ୍ତର ଖାନାରୁ ଫେରି ଆସିଚି···ଆଉ ମାମୁଁ ପୁଣି ପୂର୍ବପରି ଅଶୋକ ସହିତ ହସି ଖେଳି ଦିନ କାଟୁଚି···

ବିକାଶ—ତୁ ଠିକ୍ କହୁଚୁ ଅଭୟ !! ଦି ଦିନ ପରେ ଅଶୋକ—

ଅଭୟ—ତୁ ଆଉ ଅନ୍ୟ କଥା ଭାବୁଚୁ କ'ଣ ?

ବିକାଶ—ନା ଅଭୟ—ମୁଁ ଆଉ କିଛି ଭାବୁନି । ତୋ'ରି କଥା ଠିକ୍—ଅଶୋକ ପୁଣି ଫେରି ଆସିବ—ମାମୁଁ ଅଶୋକକୁ ପାଇବ । କିନ୍ତୁ ଏଇ ଯାହା ସବୁ ଘଟିଗଲା, ସେଥିପାଇଁ ମାମୁଁ କ'ଣ ତା ସମସ୍ତ ଜୀବନ ଧରି ମତେ କେବେହେଲେ କ୍ଷମା କରି ପାରିବ ?

ଅଭୟ—(ହସି) ବିକାଶ, ଦଶ ବର୍ଷ ହେଲା ବିବାହ କରି ତୁ ଏଇ ଗୋଟିଏ ଘଟଣାରେ ଏମିତି ଶୂନ୍ୟବାଦୀ ହୋଇ ପଡ଼ୁଚୁ ? ଅଶୋକ ଫେରି ଆସୁ—ଦେଖିବୁ—ମାୟା ସହିତ ତୋର ସମ୍ପର୍କ ତିନି ଗୁଣ ମଧୁର ହୋଇ ଉଠିବ ! କିନ୍ତୁ ଗୋଟାଏ କଥା ବିକାଶ—

ବିକାଶ—କ'ଣ ?

ଅଭୟ—ମୋ ମତରେ—ସ୍ୱାମୀ ସ୍ତ୍ରୀ ଦୁହେଁ ଦୁହିଁଙ୍କୁ ଭଲ ପାନ୍ତୁ—ଅତି ନିବିଡ଼ ଭାବରେ ପ୍ରାଣ ଦେଇ ଭଲ ପାନ୍ତୁ—ଆପତ୍ତି ନାହିଁ । କିନ୍ତୁ ଏଇ ପ୍ରାଣ ଦିଆ ନିଆ କଥାଟି କେହି କାହାକୁ ନ ଜଣାନ୍ତୁ । ଜଣାଇଲେ ବିପଦ ।

ବିକାଶ—କିନ୍ତୁ ଅଭୟ, ଏ ଦୁଇଟା ଦିନ ମୋର କଟିବ କେମିତି ? ଏ ଦୁଇ ଦିନ ମତେ ଯେମିତି ଦିଟା ଯୁଗ ପରି ମନେ ହଉଚି ।

ଅଭୟ—ତୁ ବି ପିଲାଙ୍କ ପରି ହଉଚୁ ବିକାଶ । ଏଇ ତ ସ୍ୱିହୁଁ ସ୍ୱିହୁଁ ସ୍ୱରଦିନ କଟି ଗଲାଣି । ଆଉ ଗୋଟାଏ ଦି'ଟା ଦିନ ସେମିତି କଟିଯିବ—

ବିକାଶ—ଆଖି ଆଗରେ ତ ତୁ ଦେଖୁଚୁ—ଏ ପାଖରେ ଅଶୋକକୁ ଦେଖିବା ପାଇଁ ମାୟା ମୋ ପାଖରେ ଅଳି କରୁଚି—ଜିଦ୍ ଧରୁଚି—କାନ୍ଦୁଚି—ପାଗଳୀଙ୍କ ପରି ହୋଇ ଯାଉଚି···ଆଉ ସେ ପାଖରେ ଡାକ୍ତର ବାବୁଙ୍କର ସେହି କଡ଼ା ଆଦେଶ—ଏ ଅବସ୍ଥାରେ ମାୟାକୁ ଅଶୋକ ନିକଟକୁ ଅଣାଯାଇ ପାରିବ ନାହିଁ !

ମାୟା—( ଉପରୁ ) ଅଶୋକ—ଅଶୋକ—

ବିକାଶ—ମାୟା ଉଠିଲାଣି ଅଭୟ ।···

ମାୟା—( ଉପରୁ ପୂର୍ବପରି ) ଅଶୋକ ।

ବକାଶ—ଶୁଣୁଚୁ ଅଭୟ—ସେ ଅଶୋକକୁ ଡାକୁଚ ।...

[ ମାୟା ପୂର୍ବପରି ଅଶୋକକୁ ଡାକି ଡାକି ଗୋଟାଏ ଯେମିତି ଅର୍ଦ୍ଧ-ଚେତନ ଅବସ୍ଥାରେ ତଳକୁ ଓହ୍ଲାଇ ଆସିଲା ବେଳେ ସିଡ଼ି ପାହାଚ ଉପରେ ଝୁଣ୍ଟି ପଡ଼ିଲା । ବକାଶ ତାକୁ ସାହାଯ୍ୟ କରିବା ପାଇଁ ସିଡ଼ି ଉପରକୁ ଉଠିଗଲା । ମାୟା କିନ୍ତୁ ନିଜେ ଉଠି ବକାଶର ଉପସ୍ଥିତିକୁ ଆଦୌ ଭ୍ରୂକ୍ଷେପ ନ କରି, ସେମିତି ଡାକି ଡାକି ସଦର ଦରଜା ଆଡ଼କୁ ଛୁଟିଗଲା । ]

ବକାଶ—ମାୟା—ମାୟା...ଅଭୟ !

[ ଅଭୟ ମାୟା ଆଗରେ ଠିଆ ହୋଇ ତାକୁ ଅଟକାଇଲା । ]

ମାୟା—କାହିଁ ଛାଡ଼ନ୍ତୁ ଅଭୟ ବାବୁ—ମୁଁ ଯିବି । ମୋ ଅଶୋକ ପାଖକୁ ମୁଁ ଯିବି—ଅଶୋକ ବାହାରେ ଠିଆ ହୋଇ ମତେ ଡାକୁଚି—ଛାଡ଼ନ୍ତୁ—ମୁଁ ଯିବି...।

ଅଭୟ—ଅଶୋକ କାହିଁ ମାୟା ଦେବୀ ? ସେ ପରା ଡାକ୍ତର ଖାନାରେ...।

ବକାଶ—(ମାୟା ନିକଟକୁ ଆସି ) ମାୟା !

ମାୟା—ସେ ବାହାରେ ଠିଆ ହୋଇ ମତେ ଡାକୁଚି । ଆପଣ ଛାଡ଼ନ୍ତୁ, ମୁଁ ଯିବି । ଅଶୋକ—ଟିକେ ରହ ଅଶୋକ, ମୁଁ ଯାଉଚି ( ବକାଶକୁ ) ମୁଁ ତମ ଗୋଡ଼ ଧରୁଚି, ତମେ ଯାଅ ଭଲା—ତାକୁ ଡାକି ଆଣ ।

ବକାଶ—( ମାୟାର ଦୁଇ କାନ୍ଧରେ ହାତ ରଖି ) ତମର କ'ଣ ହୋଇଚି ମାୟା ? ମାୟା !!...

ମାୟା—ଏଁ !! ଅଶୋକ କାହିଁ ?

ବକାଶ—ତମେ ସ୍ୱପ୍ନ ଦେଖୁଥିଲ ମାୟା । ଅଶୋକ ପରା କେବିନ୍‌ରେ ଅଛି ।

ଅନାଦ୍ଧ—ମା—

ମାୟା—କ'ଣ ଅନାଦ୍ଧ ?

ଅନାଦ୍ଧ – ଆସ ମା, ଏଣିକି ଆସ ।

ମାୟା—ଅଶୋକ କାହିଁ ଅନାଦ୍ଧ ?

ଅନାଦ୍ଧ—ତମେ ଆସ ମା' ଆସ—କୁନବାବୁ ପାଖକୁ ମୁଁ ତୁମକୁ ନେଇଯିବି—ଆସ ।

[ ମାୟା ଯନ୍ତ୍ର-ଚାଳିତା ପରି ଅନାଦ୍ଧକୁ ଅନୁସରଣ କଲା । ଦୁହେଁ ଭିତରକୁ ଗଲେ । ବିକାଶ ମଧ୍ୟ ସେମାନଙ୍କ ପଛେ ପଛେ ଯାଉଥିଲା । ]

ଅଭୟ—ତୁ କୁଆଡ଼େ ଯାଉଚୁ ବିକାଶ ? ତୁ ଏଠି ରହ, ଏମିତି ବୋକାଙ୍କ ପରି ଗୁହିଁ ରହିଚୁ କ'ଣ ? ଆ—ଶୁଣ ।

ଅନାଦ୍ଧ—(ଭିତରୁ) ତୁମକୁ ଗୁହାରି ହଉଚି ମା' – ଏଇ ଟୋପାକ ପିଇଦିଅ ।

[ ମାୟା ହାତରେ ଗୋଟାଏ ଦୁଧ ଗ୍ଲାସ ଧରି ଆସିଲା । ପଛେ ପଛେ ଅନାଦ୍ଧ ]···ମା—କୁନବାବୁଙ୍କ ପାଇଁ ମୁଁ ଦୁଧ ରଖିଚି । ତମେ ଏତକ ପିଇ ଦିଅ ।

ମାୟା—ତୁ ରହ ଅନାଦ୍ଧ—ମୁଁ ଅଶୋକକୁ ଆଗେ ପିଆଇ ଦିଏ ।

ଅନାଦ୍ଧ—ମୋ କଥା ଆଗେ ମାନ ମା—ତମେ ଏ ଦୁଧ ଟୋପାକ ପିଇ ଦିଅ—ତମେ ନ ପିଇଲେ କୁନବାବୁ କେବେ ପିଇବେନି ।

ମାୟା—ପିଇବନି ? ସବୁ ଦିନେ ତ ସେ ଏମିତି ପିଏ—ଆଜି କାହିଁକି ପିଇବନି ? ( ବିକାଶକୁ ସମ୍ମୁଖରେ ଦେଖି ଯେମିତି ଡରିଗଲା । )

ମାୟା—ଅଶୋକକୁ ତୁ ଲୁଚେଇ ଦେ ଅନାଦ । ପୁଣି ସେ ତାକୁ ନେଇ ଯିବେ ।

ବିକାଶ—ଦେଖୁଛୁ ଅଭୟ—

ଅଭୟ—ମାୟା ଦେବୀ—

ମାୟା—କ'ଣ କହୁଛନ୍ତି ?

ଅଭୟ—ବିକାଶ ଅଶୋକକୁ ନେଇନ—ମୁଁ ଏଠୁ ତାକୁ ନେଇ ଯାଇଛି । ବିକାଶ ତ ସେଇଦିନୁ ଏ ଘର ଗୁଡ଼ କୁଆଡ଼େ ଯାଇନ—ତାକୁ ଆପଣ ଦୋଷ ଦେଉଛନ୍ତି କାହିଁକି ?

ମାୟା—ମୁଁ କାହାକୁ ଦୋଷ ଦଉନ । ଅନାଦ, ତୁ ଯା—ନଇଲେ ସେ ପୁଣି ତାକୁ ନେଇଯିବେ ।

ଅଭୟ—ନୂଆବୋଉ, ବିକାଶ ତମର ସ୍ୱାମୀ—ସେ କାହିଁକି···

ମାୟା—ମୋ'ର ସ୍ୱାମୀ କେହି ନାହାନ୍ତି—

ଅନାଦ—ମା !! ଏ କଥା ତୁଣ୍ଡରେ ଧରନ୍ତୁ ମା !!

ବିକାଶ—ତୁ ଯା ଅନାଦ···ତାଙ୍କର ଯା' ଇଚ୍ଛା ସେ କହି ଯାଆନ୍ତୁ, ତମେ ଠିକ୍ କହିଚ ମାୟା—ମୁଁ ତମର କେହି ନୁହେଁ ।

ଅନାଦ—ତମେ ଆସ ମା—ଏଠୁ ଗୁଲ ଆସ—ଗିଲସଠା ମଚେ-ଢଅ—ଆସ—[ ଅନାଦ ପଛେ ପଛେ ମାୟା ପୁଣି ଭିତରକୁ ଗଲ ]

ଅଭୟ—ତୁ ଏ ସବୁ କଣ କହୁଚୁ ବିକାଶ ? ଦେଖୁଚୁ ତ ତାଙ୍କ ମନର ଅବସ୍ଥା···ସେ କଣ କହୁଛନ୍ତି···ସେ ନିଜେ ହୁଏତ ଜାଣନ୍ତି ନାହିଁ, ଅଥଚ ତୁ ଏମିତି ପାଗଳଙ୍କ ପରି ହଉଚୁ ?

ବିକାଶ—ମୋର ପାଗଳ ହୋଇଯିବା ଉଚିତ୍, ଅଭୟ—ମୁଁ ଆଉ ପାରିବ ନାହିଁ ( କାଉଚ୍‌ରେ ବସି ପଡ଼ିଲ ) ।

ଅଭୟ—ଆସ୍ତୁ ତୁ ଏଠି ଟିକଏ ବିଶ୍ରାମ ନେ—ମୁଁ ଆସୁଚି । ହଁ, ଡାକ୍ତର ବାବୁଙ୍କୁ ଫୋନ କରିଥିଲୁ ?

ବିକାଶ—ନା……

ଅଭୟ—ସେ ବି ଫୋ଼ କରି ନାହାନ୍ତି ?

ବିକାଶ—ନା……

ଅଭୟ—ମୁଁ…ତା ହେଲେ ଅଶୋକକୁ ଦେଖି ଆସେ ।

( ଅଭୟ ଚାଲିଗଲା । ବିକାଶ ସେମିତି ବସିଥାଏ । ଟିକଏ ପରେ ବଉ ମାମୁଁ ଆସିଲେ )

ବଉ—ଆସ ଭାଇ ଭିତରକୁ ଆସ……

ବିକାଶ—କିଏ ?

ବଉ—ତମ ଶ୍ୱଶୁରେ ଆସିଛନ୍ତି ।……

ବିକାଶ—ହଠାତ୍ କେମିତି ଆସିଲେ ( ମାଧବ ଆସିଲେ )… ଆପଣ ?

ମାଧବ—ମୁଁ ଶୁଣିଲି…ଅଶୋକର କଣ ଅପରେସନ୍ ହେଉଚି—ଡାକ୍ତରଖାନାରେ ?

ବିକାଶ—ହଁ ତା'ର ଟନସିଲ୍ ଅପରେସନ୍ ହୋଇଛି ।

ବଉ—ସେଇଥି ପାଇଁ ତାହା ହେଲେ ମାଧୁରାଣୀ ସେଦିନ ରାତିରେ କୁଆଡ଼େ ଆମ ବସାକୁ ଲୋକ ପଠାଇଥିଲେ । ମୁଁ ଚଣ୍ଡୀଳ ତ ସେଦିନ ସକାଳୁ ଗାଁକୁ ଚାଲି ଯାଇଥିଲି—ଆଜି ଫେରୁଚି ।

ମାଧବ—ମାଧୁ ତା ହେଲେ ଅଶୋକ ପାଖରେ ଅଛି ?

ବିକାଶ—ନା ।

ମାଧବ—ଆଉ କିଏ ଅଛି ସେଠି ?

ବିକାଶ—ତା'ର ସବୁ ସୁବିଧା ସେଠି କରାହେଇଚି । ସେ କେବିନ୍‌ରେ ରହିଚି ।

ମାଧବ—ମାୟା କାହିଁ ? (ଡାକିଲେ) ମାୟା !

(ମାୟା ଭିତରୁ ଆସି କେବଳ ସ୍ଥିର ଦୃଷ୍ଟିରେ ମାଧବଙ୍କୁ ଚାହିଁ ରହିଲା)

ମାଧବ—ତୋ'ର କଣ ହେଇଛି ମା ? କଥା କହୁନୁ ଯେ ?

ମାୟା—ବାପା ! (ଜୋର୍‌ରେ କାନ୍ଦି ଉଠିଲା) .

ମାଧବ—ଏ କଣ ମାୟା ? ଏମିତି କାନ୍ଦୁଚୁ କାହିଁକି ? କଣ ହେଇଚି କହ—ମାୟା ?

ବଇ—ମାୟାରାଣୀ ?

ମାଧବ—ପ୍ରକାଶ ବାବୁ, ମାୟାର କଣ ହେଇଚି ? ତୁ ଏମିତି କାନ୍ଦୁଚୁ କାହିଁକି ମାୟା ? ତୁନି ହ—କହ କଣ ହେଇଚି ? ମାୟା ?

ମାୟା—ମତେ ତମେ ନେଇ ଚାଲ ବାପା—ମୁଁ ଏଠି ରହି ପାରିବି ନାହିଁ ।

ବଇ—କଥା କ'ଣ ପ୍ରକାଶ ବାବୁ ?

ମାଧବ—ଅଶୋକର ଦେହ କେମିତି ଅଛି ଆଗେ କହିଲୁ ?

ମାୟା—ମୁଁ ଜାଣିନି ।

ମାଧବ—ତୁ ଜାଣିନୁ ?······ପ୍ରକାଶ ?

ପ୍ରକାଶ—ଆପଣ ଆଗେ ମୁହଁ ହାତ ଧୁଅନ୍ତୁ । ପରେ ସବୁ ଶୁଣିବେ ।

ମାଧବ—ମୁଁ କିଛି ବୁଝି ପାରୁନି ମାୟା । ଅଶୋକର ଅପରେସନ୍, ଅଥଚ ତୁ କିଛି ଜାଣିନୁ ।

ମାୟା—କେମିତି ଜାଣିବି ?······ମୁଁ ଶୋଇଥିଲି ବେଳେ ମତେ ଲୁଚାଇ ତାକୁ ଡାକ୍ତରଖାନା ପଠାଇ ଦିଆହୋଇଚି । ଆଜିକୁ ଚାରିଦିନ ହେଇଗଲା, ମତେ ସେଠିକି କେହି ଯିବାକୁ ଦେଉନାହାନ୍ତି । ···ମୁଁ ଏଠି ଗୋଟାଏ ବନ୍ଦିନୀ ହୋଇ ପଡ଼ିଛି ।···

ମାଧବ—ଏ କଥା ସତ ବିକାଶ ?
ବିକାଶ—ହଁ । ତା ଛଡ଼ା ଅନ୍ୟ ଉପାୟ ନ ଥିଲା ।......
ମାଧବ—ଉପାୟ ନ ଥିଲା ?...କି ଉପାୟ ନ ଥିଲା ? ପୁଅ ପାଖକୁ ମା ଯିବ—ଏଥିପାଇଁ ପୁଣି ଉପାୟ ଦରକାର ?
ବିକାଶ—ଆପଣ ସବୁ କଥା ଶୁଣିଲେ—
ମାଧବ—ଶୁଣିବାର ଅଛି କଣ ଯେ ଶୁଣିବି ? ଆଖି ଆଗରେ ତ ସବୁ ଦେଖୁଛି । ପୁଅ ଡାକ୍ତରଖାନାରେ—ମା ଏଠି ପଡ଼ି କାନ୍ଦୁଛି—ଏଇଥିରୁ କଣ ସବୁ କଥା ବୁଝି ହେଉନି ?
ବଉ—ଅଶୋକର ଏଇ ଘଣ୍ଟିକା ଫୁଲଥିଲାଟି ? ଏଇଠି କଣ ଉପାୟ ନ ଥିଲା ଯେ ଅପରେସନ୍ ଯାଏ କଥା ଗଲା ।
ମାୟା—ଉପାୟ କରନ୍ତା କିଏ ? ଗଣ୍ଡି ପାଚିବା ଯାଏ ତ କେହି ଅପେକ୍ଷା କଲେ ନାହିଁ ।
ମାଧବ—ଥାଉ । ତାଙ୍କୁ ଯାହା ଭଲ ଦିଶିଲା ସେ କଲେ; ମୋର ସେଥିରେ କିଛି କହିବାର ନାହିଁ । ମୁଁ କିନ୍ତୁ ମାୟାକୁ ଆଜି ଆମ ଘରକୁ ନେଇଯାଉଚି ।
ବଉ—ଏଇଟା କଣ ଭଲ ହେବ ଘଇ ? ଛୁଆଟା ଏ ଅବସ୍ଥାରେ ପଡ଼ିଚି...ତମେ ଚାଲିଲ, ଆଗେ ତାକୁ ଟିକିଏ ଦେଖି ଆସିବା ।
ମାଧବ—ଦେଖିବାକୁ ତ ଯିବି । କିନ୍ତୁ ମାୟାକୁ ମୁଁ ନେଇ ଯାଉଚି । ସେ ଆଜି ଯିବ ।
ବିକାଶ—ଭଲ କଥା । ଆପଣ ବୃଦ୍ଧାନ୍ତ ତ ତାକୁ ନେଇ ଯାଆନ୍ତୁ । ମୋର ଆପତ୍ତି ନାହିଁ । ମାୟା ଆଉ ଅଶୋକ ଦୁହିଁଙ୍କର ଭଲ ପାଇଁ ମୋର ଯାହା କରିବାର ମୁଁ କରିଚି । କିନ୍ତୁ ମାୟାର ମୋ ଉପରେ ତିଳେ ହେଲେ ବିଶ୍ୱାସ ନାହିଁ । ଆପଣଙ୍କୁ

ଦେଖି ସେ ଯେମିତି ଗୋଟାଏ ଜନାସ୍ତ ଖୋଜ ପାଇଚ ।
ଆପଣ ଯାହା ଉଚିତ ମନେ କରୁଛନ୍ତି—କରନ୍ତୁ ।

ମାଧବ—ମୋ ପାଖକୁ ଖଣ୍ଡେ ଚଠି ବ ଲେଖା ହେଲନ ? ଅଭୟ-
ବାବୁ କଣ୍ଠରେ ସିନା ଦୟା ହେଲରୁ···(ଅଭୟ ଆସିଲ )

ଅଭୟ—(ନମସ୍କାର କର) ବର୍ତ୍ତମାନ ଆସିଲେ ?

ମାଧବ—ହଁ । କନ୍ତୁ ଏତେ କଥା ତ ତମେ ଚଠିରେ ଲେଖି ନ ଥିଲ
ଅଭୟବାବୁ···?

ଅଭୟ—ମୁଁ ସତ କହୁଚ ମଉସା, କଥା ଏତେଦୂର ଯିବ ବୋଲ
ମୁଁ ଆଦୌ ଆଶଙ୍କା କର ନ ଥିଲ । ନୂଆବୋଉ ଯେ ଆମକୁ
ଶତ୍ରୁ ଆଖିରେ ଦେଖିବେ, ଏ କଥା କଏ ଜାଣିଥିଲ ?

ବଇ—ହଇହେ ଅଭୟ ବାବୁ—

ଅଭୟ—ଆଜ୍ଞା—

ବଇ—ଏ କୁଅଁ ମୂନରେ ଛୁଡ଼ିବା ପଦାର୍ଥ, କୁସଡ଼ି ଯାଏ ଗଲ
କାହିଁକ ?

ଅଭୟ—ତେବେ ଵ'ତ ଦେଖୁଚନ୍ତି ଛୁଡ଼ୁନ । ବକାଶ, ଡାକ୍ତର
ବାବୁ ଏଠିକ ଆସି ନାହାନ୍ତି ?

ବକାଶ—ନା'ତ···

ଅଭୟ—ମୁଁ ତେବେ ଭୂଲ୍ ଖବର ପାଇ ବାଟରୁ ଫେର ଆସିଲ ।

ବଇ—ଅଭୟ ବାବୁ, ତମେ ଟିକଏ ଚ୍ଛଲ—ସେ ବାହାପିଆଟାକୁ
ଆମେ ଥରେ ଯାଇ ଦେଖିଆସୁ ।

ମାଧବ—ତା ଅବସ୍ଥା ବର୍ତ୍ତମାନ ଅଛି କେମିତ ?

ଅଭୟ—ଆଜ ସକାଳୁ ମୁଁ କଛି ଖବର ପାଇନ । ଆପଣ ଆସନ୍ତୁ,
ଯିବା—

ମାୟା—ବାପା !

ମାଧବ—ତୁ ଯିବୁ ମା ? ଅଭୟ ବାବୁ—ମାୟା ଚାଲୁ ?

ଅଭୟ—(ପ୍ରକାଶ ସମ୍ବନ୍ଧ ଦୃଷ୍ଟି ବିନିମୟ କରି ) ସେ ଯିବାରେ କିଛି ଆପତ୍ତି ନାହିଁ ଯେ, କିନ୍ତୁ...

ମାଧବ—ଆଉ କିନ୍ତୁ କଣ ? କାହିଁକି ଭଲା ତମେ ସବୁ ତାକୁ ଜୋର୍ କରି ଅଟକାଇ ରଖୁଚ କହିଲ ?

ଅଭୟ—ଆପଣ ଜାଣି ନାହାନ୍ତି ମଉସା—ଚାରିଦିନ ହେଲାଣି, ତାଙ୍କ ଖିଆପିଆରେ କିଛି ଠିକଣା ନାହିଁ । ଆପଣ ତ ଆସିଲେଣି—ଆଗେ ତାଙ୍କୁ ଖୁଆଇ ପିଆଇ ସୁସ୍ଥ କରାନ୍ତୁ— ତା’ପରେ ସେ ଯିବେ ।

ବଉ—ଅଭୟ ବାବୁ ଠିକ୍ କଥା କହୁଚନ୍ତି ଭାଇ...(ମାୟାକୁ) ମାୟାଲୋ !

ମାୟା—ନା ବାପା—ମୁଁ ଆଗେ ଯିବି—

ମାଧବ—ତୋ ଅବସ୍ଥା କ’ଣ ହେଲାଣି କହିଲୁ ?

ମାୟା—କିଛି ହେଇନି—ତମେ ଚାଲ...

ମାଧବ—ଏମିତି ପିଲାଙ୍କ ପରି ହୁଅନ୍ତି ? ତୁ ଆଇଲୁ ମୋ ସାଥିରେ ଆ—(ଉପରକୁ ଚାଲିଗଲେ)

ଅଭୟ—ଅନାଦି !

ଅନାଦି—ଆଜ୍ଞା !

ଅଭୟ—ତୋ ମା’ଙ୍କ ପାଇଁ କ’ଣ ଖାଇବାକୁ ନେଇ ଯା...

( ଅନାଦି ଭିତରକୁ ଗଲା )

ପ୍ରକାଶ—ତାଙ୍କୁ ଆସିବା ପାଇଁ ତୁ ଚିଠି ଦେଇଥିଲୁ ?

ଅଭୟ—ହଁ, ତାଙ୍କ ଆସିବାର ସୁଫଳ ଦେଖିଲୁ ତ ?

ପ୍ରକାଶ—ଦେଖିଲି । କିନ୍ତୁ ତାଙ୍କ ଆଖିରେ ବି ତ ମୁଁ ଦୋଷୀ ।

( ମାଧବ ଉପରୁ ଆସିଲେ )

ମାଧବ—ଏ ସବୁ କଥା ଦେଖି ମୋର ଭାରି ଦୁଃଖ ହେଉଛି ଅଭୟ ବାବୁ । ମୁଁ କିଛି ବୁଝି ପାରୁନି···

ଅଭୟ—ଆପଣ ଆସନ୍ତୁ ମୋ ସାଥିରେ—ମୁଁ କହୁଛି ।

[ ଅଭୟ, ମାଧବ ଓ ବାଇ ଚାଲିଗଲେ । ପ୍ରକାଶ ଯେମିତି ଶ୍ରାନ୍ତିରେ ନିଶ୍ୱାସ ମାରି ବସି ପଡ଼ିଲା । ତା'ପରେ ସେ ଉଠି ଉପରକୁ ଯିବ ବୋଲି ଆଗେଇଲା, କିନ୍ତୁ କ'ଣ ଭାବି ସିଡ଼ି ମୁହଁରୁ ଫେରି ଆସିଲା । ଟିକିଏ ପରେ ଆସିଲା ଅନାଦି । ]

ଅନାଦି—ବାବୁ ! ଫେରି ଆସିଲ ବାବୁ ! ଉପରକୁ ଗଲନି ?

ପ୍ରକାଶ—ନା ।

ଅନାଦି—ସକାଳୁ ଆସି ଏତେବେଳ ହେଲାଣି—ଟିକେ ଦାନ୍ତ ବି ଘଷିଲ ନାହିଁ । ଆସ, ମୁଁ ପାଣି ଦେଲିଣି···ଆସ ।

[ ଅନାଦି ପଛେ ପଛେ ପ୍ରକାଶ ଭିତରକୁ ଗଲା । ଟିକିଏ ପରେ ଅଶୋକକୁ ସାଥିରେ ନେଇ ଆସିଲେ ଡାକ୍ତର । ଅଶୋକ ବର୍ତ୍ତମାନ ସମ୍ପୂର୍ଣ୍ଣ ସୁସ୍ଥ । ]

ଅଶୋକ- ବୋଉ କାହିଁ ··ବୋଉ ?

ଡାକ୍ତର—ତୁ ଟିକିଏ ରହ । ତାଙ୍କୁ ସବୁ ଚମକେଇ ଦବା । ( ଅପେକ୍ଷାକୃତ ଧୀର ଗଳାରେ ଡାକିଲେ ) ଅନାଦି, ଅନାଦି ।

[ଅନାଦି ଆସି ଏମାନଙ୍କୁ ଦେଖି ଯେମିତି ଚମକି ଉଠିଲା । ]

ଅନାଦି—କିଏ !! କୁନିବାବୁ !!

[ ଆନନ୍ଦରେ ବିହ୍ୱଳ ହୋଇଯାଇ ସେ କାହାକୁ ଡାକିବ—କ'ଣ କରିବ···ଯେମିତି ଠିକ୍ କରି ପାରୁ ନ ଥାଏ ]

ମା···ମା···ବାବୁ !

ଡାକ୍ତର—ଏ ଅନାଦି—ଶୁଣ୍ ।

ଅନାଦି—( ଡାକ୍ତରଙ୍କ କଥା ପ୍ରତି ଭ୍ରୂକ୍ଷେପ ନକରି ଡାକି ଚାଲିଥାଏ ) ମା—ବାବୁ—ଏଣେ ଆସି ଦେଖ—କୁନିବାବୁ ଆସିଲେଣି । ମା—

[ ମାୟା ସିଡ଼ି ଉପରକୁ ଆସିଲା ]

ଅଶୋକ—ବୋଉ !

ମାୟା—( କ୍ଷିପ୍ର ଗତିରେ ଓହ୍ଲାଇ ଆସି, ଅଶୋକକୁ କୋଳକରି ) ଅଶୋକ—ଅଶୋକ—ତୁ ମତେ ଛାଡ଼ି କୁଆଡ଼େ ଚାଲି ଯାଇଥିଲୁ ବାପ—ତୋ' ବୋଉକୁ ଛାଡ଼ି ତୁ କୁଆଡ଼େ ଯାଇଥିଲୁ···ମୁଁ କେତେ କାନ୍ଦିଲି···(କହୁକହୁ କାନ୍ଦୁଥାଏ )

ଅଶୋକ—ତୁ କାନ୍ଦନା ବୋଉ । ବାପା କାହାନ୍ତି କହ ।

[ ବିକାଶ ଆସିଲା ]

ଅଶୋକ—ବାପା ।

[ ମାୟା କୋଳରେ ଅଶୋକକୁ ଦେଖି ବିକାଶ ଆନନ୍ଦରେ କ୍ଷଣ କାଳ ସ୍ତବ୍ଧ ହୋଇ ରହିଲା ]

ବିକାଶ—ତୁ କାହା ସାଥିରେ ଆସିଲୁ ରେ ଅଶୋକ ?

ଅଶୋକ—ଡାକ୍ତର ବାବୁ—

[ ଡାକ୍ତର ସୋଫା ପଛରୁ ସାମ୍ନାକୁ ଆଗେଇ ଆସିଲେ ]

ଡାକ୍ତର—ନମସ୍କାର ମାୟା ଦେବୀ । ଅଶୋକକୁ ପାଇଲେ ତ ? ସେ ବର୍ତ୍ତମାନ ସମ୍ପୂର୍ଣ୍ଣ ସୁସ୍ଥ । କେବଳ ଟିକିଏ ବିଶ୍ରାମ ଦରକାର । କିନ୍ତୁ ମୁଁ ଆପଣଙ୍କୁ ଯୋଉ ଦଣ୍ଡ ଦେଇଚି, ସେଥିପାଇଁ ମତେ ଆପଣ କ୍ଷମା କରନ୍ତୁ ।

[ ମାୟା ନୀରବ । କିନ୍ତୁ ତା' ମୁହଁ ଦେଖିଲେ ଜଣାଯାଏ ଯେ, ସେ ନିଜେ ଅପରାଧୀ, ଆଉ ଡାକ୍ତରଙ୍କ ପ୍ରତି ତା'ର କୃତଜ୍ଞତାର ସୀମା ନାହିଁ । ଡାକ୍ତର କହି ଚାଲିଥାନ୍ତି— ]

ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ଆପଣଙ୍କର "ଅଶୋକ – ଅଶୋକ" ଡାକ ମୋ କାନରେ ବାଜେ—କିନ୍ତୁ ମୋର ଉପାୟ କ'ଣ ଥିଲି କୁହନ୍ତୁ ?···ଆସ୍ତୁ, ମୁଁ ବର୍ତ୍ତମାନ ଆସେ—

ବିକାଶ—ଚୁହନ୍ତୁ ଡାକ୍ତର ବାବୁ । ଅନାଦି ! ( ଅନାଦି ଭିତରକୁ ଗଲା )

ଡାକ୍ତର—(ବିକାଶ ଓ ମାୟା ଦୁହିଁଙ୍କୁ ଲକ୍ଷ୍ୟ କରି—ହସ ହସ ମୁହଁରେ) ବର୍ତ୍ତମାନ ଏ ଅବସ୍ଥାରେ ମୋ'ର ବୋଧହୁଏ ଏଠି ନ ରହିବା ଉଚିତ । ମୁଁ ପରେ ଆସିବି । ନମସ୍କାର ।

( ଚାଲିଗଲେ )

ଅଶୋକ—ବାପା—

ବିକାଶ—( ମାୟାକୁ ଲକ୍ଷ୍ୟ କରି ) ତୋ'ର ତ ଏ ଘରେ ଆଉ କେହି ବାପା ନାହାନ୍ତି ରେ ଅଶୋକ !

ମାୟା—ଶୁଣ । ତମେ ମତେ କ୍ଷମା କର । ଅଶୋକ ପାଇଁ ମୁଁ ଏକାବେଳକେ ପାଗଳ ହୋଇ ଯାଇଥିଲି···ତମେ ମତେ କ୍ଷମାକର ।

[ ଯା'ପରେ ବିକାଶର ବୋଧହୁଏ ଆଉ କିଛି କହିବାର ନ ଥିଲା । ଏତିକିବେଳେ ବାହାରୁ ଅଭୟ, ମାଧବ ଓ ବଡ଼ ମାମୁଁ ଆସିଲେ ]

ଅଭୟ—ବାସ୍ ! ଇଏ ଆସି ଏଠି···ଆମେ ଯାଇ ତେଣେ ଖୋଜୁଚୁ ?

ମାୟା—ଅଶୋକ—ଜେଜେଙ୍କୁ ଜୁହାର କର ।

[ ଅଶୋକ ଜୁହାର କରିବା ପୂର୍ବରୁ ମାଧବ ତାକୁ କୋଳକୁ ଉଠାଇ ନେଲେ ]

ବଇ—କ'ରେ ବାହାପିଆ ଟୋକା ! ଗୋଟାଏ ନାଟ ଲଗେଇ ଦେଲ୍‌, ନା ? ଦେ, ଡାକ୍ତରଖାନାରୁ ମୋ ପାଇଁ କ'ଣ ଆଣିଚ୍‌, ଦେ ।

ଅଶୋକ—ତମ ପାଇଁ ଗୋଟାଏ ଝୁଲ୍‌-ମାଳ ଆଣିଚ ବଇ ଜେଜେ···ମାଳ ଗଡ଼େଇବ ?

[ ସମସ୍ତେ ହସି ଉଠିଲେ ]

## ଯ ବ ନି କା

ମୁଦ୍ରାକର—ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ର,
ପ୍ରଭାତ ପ୍ରେସ, କଟକ-୨

# ପରିଶିଷ୍ଟ

[ ୧୯୫୭ ବର୍ଷର ମିଳନ ଉତ୍ସବର ସାହିତ୍ୟ ସଭାରେ ପ୍ରଧାନ ଅତିଥି ଭାବରେ ଯୋଗ ଦେଇ ଅଧ୍ୟାପକ ଶ୍ରୀ ଗିରିଜାଶଙ୍କର ରାୟ ଏହି ପ୍ରବନ୍ଧଟି ପାଠ କରିଥିଲେ । ]

ଆଜ ଏହି ବିଦ୍ୱନ୍ମଣ୍ଡଳୀରେ ଓଡ଼ିଆ ନାଟକ ବିଷୟକ ଆଲୋଚନା ସଭାରେ ଅଂଶ ଗ୍ରହଣ କରିବାର ସୁଯୋଗ ଓ ସୁବିଧା ଦେଇଥିବାରୁ ମୁଁ ଉଦ୍ୟୋକ୍ତାମାନଙ୍କ ନିକଟରେ କୃତଜ୍ଞ । ଓଡ଼ିଆ ନାଟ୍ୟକଳା ସମ୍ବନ୍ଧରେ କୌଣସି ଭବିଷ୍ୟଦ୍ ବାଣୀ କରିବାକୁ ବା ନିର୍ଦ୍ଦେଶ ଦେବା ନିମନ୍ତେ ମୁଁ ଏକାନ୍ତ ଅକ୍ଷମ । କେବଳ ନିଜର ଆନନ୍ଦ ନିମନ୍ତେ ବିଶ୍ରାମ ବୁଦ୍ଧି ପ୍ରୟୋଗ କରି ମୁଁ କେତେଗୁଡ଼ିଏ ନାଟକ ମାତ୍ର ପାଠ କରିବାର ଚେଷ୍ଟା କରିଅଛି, କିନ୍ତୁ ଧାରାବାହିକ ଭାବରେ ତାହାର ଚର୍ଚ୍ଚା କରିବାର ସୁବିଧା ପାଇ ନାହିଁ ଓ ନାଟ୍ୟକାର, ନାଟକ ସମାଲୋଚକ ପ୍ରେକ୍ଷାଗୃହ ସହିତ ସମ୍ପୃକ୍ତ ବହୁ ଗୁଣ ବ୍ୟକ୍ତିମାନଙ୍କର ଏହି ସମାବେଶରେ କୌଣସି ଭାଷଣ ଦେବାର ଅଯୋଗ୍ୟତାରୁ ପଦେ ପଦେ ଉପଲବ୍ଧି କରୁଅଛି । ଉଦ୍ୟୋକ୍ତାମାନଙ୍କୁ ସଶ୍ରଦ୍ଧ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଉପସ୍ଥିତ ବିଦ୍ୱନ୍ମଣ୍ଡଳୀ ନିକଟରେ ସେମାନଙ୍କର ଅବଶ୍ୟମ୍ଭାବୀ ନୈରାଶ୍ୟ ନିମନ୍ତେ କ୍ଷମା ପ୍ରାର୍ଥନା କରୁଅଛି ।

ଜାତୀୟ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ଆଜି ନାଟକର ଏକାନ୍ତ ପ୍ରୟୋଜନ ଅନୁଭୂତ ହେଉଅଛି, ଜାତୀୟ ସଂସ୍କୃତିର ବିକାଶ ନିମନ୍ତେ, ଜାତୀୟ ଭାବର ପରିପୁଷ୍ଟିର ନିମନ୍ତେ, ଜାତୀୟ ଜୀବନ ମଧ୍ୟରେ କୃଷ୍ଟିଗତ ଐକ୍ୟ ପ୍ରତିଷ୍ଠିତ କରିବା ନିମନ୍ତେ ନାଟ୍ୟକଳାର ବିକାଶ ସାଧନ ଏକାନ୍ତ ଅପରିହାର୍ଯ୍ୟ ହୋଇ ପଡ଼ିଅଛି, କିନ୍ତୁ ଏ ଦିଗରେ ଯେପରି ଚିନ୍ତାର ପ୍ରୟୋଜନ, ଯେପରି ସାଧନା ଆବଶ୍ୟକ ତାହାର ଅଭାବ ଥିବାରୁ ଅନେକ ସମୟରେ ଆମ୍ଭମାନଙ୍କର ଚେଷ୍ଟା ଫଳପ୍ରଦ ହୋଇପାରୁ ନାହିଁ । ନାଟକ ସାହିତ୍ୟ, ମାତ୍ର ତାହା ବାସ୍ତବ ଜୀବନ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ସାହିତ୍ୟ ; କବିକଳ୍ପନାର ବର୍ଣ୍ଣାଳିରଞ୍ଜିତ ସରସତା ପରିବର୍ତ୍ତେ ଏଥିରେ ସାମାଜିକ ଜୀବନର ନଗ୍ନ ପ୍ରତିଛବି ପଦେ ପଦେ ଦେଖାଯାଏ । ନାଟକ କାବ୍ୟ, ମାତ୍ର ତାହା ଦୃଶ୍ୟ କାବ୍ୟ, କୋମଳକାନ୍ତ ପଦାବଳୀର ମୃଦୁଗୁଞ୍ଜନ ଅପେକ୍ଷା ଏଥିରେ ଅଭିନୟଜନିତ ସଜୀବ ଚିତ୍ରାଙ୍କନ ସମଧିକ ପରିସ୍ଫୁଟ, ଅଳଙ୍କାରଗ୍ରାହ୍ୟ କାବ୍ୟର ମନୋହର ଶୋଭା ଅପେକ୍ଷା ଏଥିରେ ଜୀବନର ବାସ୍ତବ ରୂପାୟନ ଆମ୍ଭମାନଙ୍କ ମନକୁ ଅଧିକ ଆକୃଷ୍ଟ କରେ । ନାଟକରେ ସାହିତ୍ୟର ବ୍ୟଞ୍ଜନାଧର୍ମ ଓ କାବ୍ୟର ଚମତ୍କାରିଣୀ ଶକ୍ତି ନ ରହିଲେ ତାହାର ସରସତା ବ୍ୟାହତ ହୁଏ, କିନ୍ତୁ ନାଟକର ବିଚାର କରିବା ସମୟରେ ଆମ୍ଭମାନଙ୍କୁ ଏକ ଦିଗରେ ସାମାଜିକ ପରିବେଶ ଓ ଅନ୍ୟ ଦିଗରେ ପ୍ରେକ୍ଷାଗୃହ ସହିତ ସମ୍ପୃକ୍ତ କୁଶଳୀ ନଟନଟୀମାନଙ୍କର ଅଭିନୟ-କାଳୀନ ଚରିତ୍ର ବ୍ୟାଖ୍ୟା ଓ କଥୋପକଥନ ମାଧ୍ୟମରେ ଆବେଗ ବିଶ୍ଳେଷଣ ପ୍ରଭୃତିକୁ ମଧ୍ୟ ବିଚାର କରିବାକୁ ପଡ଼େ । ନାଟ୍ୟସାହିତ୍ୟ ପ୍ରେକ୍ଷାଗୃହ ସହିତ ଏଡେ ନିବିଡ଼ ଭାବରେ ସମ୍ପୃକ୍ତ ଯେ ଅଭିନୟ-ନିରପେକ୍ଷ ଆଲୋଚନା ନାଟକ ପକ୍ଷରେ ଅବାସ୍ତବ ବିଚାର ବୋଲି

ମନେ କରିବାକୁ ହେବ । ନାଟ୍ୟକାର ଯାହା ଲେଖେ ଅଭିନେତା ତାକୁ ରୂପାୟିତ କରି ଦର୍ଶକମାନଙ୍କ ମନରେ ସାମୟିକ ବିଭ୍ରାନ୍ତି ଜାତ କରି ତାହାର ଅନ୍ତର୍ନିହିତ ଭାବକୁ ବ୍ୟାଘାତ କରେ, କିନ୍ତୁ ଦର୍ଶକର ମନ ସାମାଜିକ ପରିବେଶ ଦ୍ୱାରା ସ୍ୱତଃ ଅଭିଭୂତ ହେଉଥିବାରୁ ନାଟ୍ୟକାର ବା ଅଭିନେତା ଏହି ପରିବେଶକୁ ଏଡ଼ି ଦେଇ ନାଟକ ସୃଷ୍ଟି କରିପାରେ ନାହିଁ ।

ନାଟକର ଚିତ୍ତବିନୋଦନ କରିବାର ଶକ୍ତି ଅସୀମ, ଦର୍ଶକ ମନରେ ସ୍ୱତଃ ଆନନ୍ଦ ଜାତ କରିବା ନିମନ୍ତେ ନାଟକ ସକ୍ଷମ । କାବ୍ୟର ମାଧୁର୍ଯ୍ୟ ଉପଭୋଗ କରିବା ନିମନ୍ତେ ଅନେକ ସମୟରେ ନିଭୃତବାସ ପ୍ରୟୋଜନ ହୋଇପାରେ । ବିଭିନ୍ନ ଲୋକ ବିଭିନ୍ନ ସମୟରେ ମାନସିକ ଭାବର ବିଭିନ୍ନ ବିକାଶଦ୍ୱାରା ବିଭିନ୍ନ ପ୍ରକାର କାବ୍ୟର ଅନ୍ତର୍ନିହିତ ରସର ଆସ୍ୱାଦନ କରିପାରେ, ଏକକ ପ୍ରୟାସ ଦ୍ୱାରା ଦ୍ରୁତକାବ୍ୟ ଓ ପାତ୍ରକାବ୍ୟର ରସାସ୍ୱାଦନଜନିତ ଆନନ୍ଦରେ ଅଭିଭୂତ ହୋଇପାରେ । ଗଦ୍ୟ ସାହିତ୍ୟରେ ଲେଖକ ପାଠକର ଚିନ୍ତାଧାରା ଉପରେ ପ୍ରଭାବ ବିସ୍ତାର କରି ତାହାର ବୁଦ୍ଧିବୃତ୍ତିକୁ ଉତ୍ତେଜିତ କରି ଆନନ୍ଦର ଉପାଦାନ ସଂଗ୍ରହ କରିଦିଏ, କିନ୍ତୁ ନାଟ୍ୟ ସାହିତ୍ୟ ଏକ ସମୟରେ ସହସ୍ର ସହସ୍ର ଦର୍ଶକଙ୍କୁ ଆନନ୍ଦ ପରିବେଷଣ କରି ତାଙ୍କ ମନରେ ଜୀବନ୍ତ ରସର ମୋହ ଜାତ କରି ତାଙ୍କୁ ଗୋଟିଏ ନିର୍ଦ୍ଧାରିତ ସମୟ ମଧ୍ୟରେ ଅଭିଭୂତ କରିଦେଇ ପାରେ । ଏହି କାରଣରୁ ନାଟକ ଆଜି ବ୍ୟବସାୟ ସାହିତ୍ୟ, ବୃତ୍ତିନିର୍ଭର ସାହିତ୍ୟ, ଅର୍ଥୋପାର୍ଜନର ଉପାୟ ରୂପେ ପରିକଳ୍ପିତ ସାହିତ୍ୟ । ଅତି ପ୍ରାଚୀନ କାଳରୁ ଶିକ୍ଷିତ କଳାବିତ୍ ନଟନଟୀମାନେ ନାଟ୍ୟ ସାହିତ୍ୟକୁ ରୂପାୟିତ କରିବା ନିମନ୍ତେ ନିଯୁକ୍ତ ଏବଂ ନାଟକ ବ୍ୟବସାୟ ବୁଦ୍ଧିଦ୍ୱାରା ପରିଚାଳିତ ହେଉଥିବାରୁ ଏଥିରେ ବହୁ ପ୍ରକାର ଦୋଷ ଗୁଣର ସମାବେଶ ଘଟିଅଛି । ଏକ ଦିଗରେ

ଅତିରଞ୍ଜନ ସ୍ପୃହା ନାଟକର ସାହିତ୍ୟ ଧର୍ମକୁ କ୍ଷୁଣ୍ଣ କରୁଅଛି, ଅତି ଦ୍ରୁତ ପଟପରିବର୍ତ୍ତନ ହେତୁରୁ ବ୍ୟଞ୍ଜନା ହୃଦୟଙ୍ଗମ କରିବା ନିମନ୍ତେ ରସବୋଧ କ୍ଷମତା ଅପାରଗ ହେଉଅଛି, ଅଭିନେତାମାନଙ୍କ ମୁଖରେ ଚରିତ୍ରୋପଯୋଗୀ ସହଜବୋଧ ଭାଷା ଦେବାର ପ୍ରୟୋଜନ ହେଉଥିବାରୁ ଅଳଂକାର ପ୍ରୟୋଗ ଅସମ୍ଭବ ହୋଇ ପଡ଼ୁଅଛି ଓ ଏହା ଜନତା ସାହିତ୍ୟ ରୂପେ ପରିଗଣିତ ହୋଇ ପାରିଅଛି । କିନ୍ତୁ ବହୁ କ୍ଷେତ୍ରରେ ପ୍ରେକ୍ଷାଗୃହର ମାନଦ୍ୱାରା ନାଟକର ବିଚାର କରାଯାଉଥିବାରୁ ଅତିନାଟକୀୟତା ପ୍ରକଟ ହୋଇଅଛି ।

କିଛିଦିନ ପୂର୍ବେ ଚଳଚ୍ଚିତ୍ରର ପ୍ରଭାବରୁ ନାଟକର ଲୋକପ୍ରିୟତା ଅତିମାତ୍ରାରେ ବିନଷ୍ଟ ହୋଇ ଯାଇଥିଲା । ସବାକ୍ ଚଳଚ୍ଚିତ୍ର ବାସ୍ତବରେ ନାଟକର ପ୍ରବଳ ପ୍ରତିଦ୍ୱନ୍ଦୀ । କେତେକ ବିଶିଷ୍ଟ ଅଭିନେତାଙ୍କର ସ୍ପଷ୍ଟ ଅଭିନୟ ଏକ ସମୟରେ ବହୁ ସଂଖ୍ୟାରେ ଦେଶର ପୁରପଲ୍ଲୀରେ ପରିବେଷଣ କରିବା ସମ୍ଭବ ହୁଏ । ବୈଜ୍ଞାନିକ ପ୍ରକ୍ରିୟାରେ ଅଭିନୟର ସୃଷ୍ଟି, ପୁନରାବର୍ତ୍ତନ ମଧ୍ୟ ସମ୍ଭବପର ହୁଏ । ନୃତ୍ୟଗୀତାଦିର ପ୍ରାଚୁର୍ଯ୍ୟ ମନୋରମ ଯୌନାବେଦନାଦିର ଆତିଶଯ୍ୟ ଓ ଉତ୍ତେଜନା—ସଞ୍ଚାରୀ ଘଟଣା ପରମ୍ପରାର ଏକତ୍ର ସମାବେଶଦ୍ୱାରା ଅର୍ଥଲାଭ କରିବା ବ୍ୟବସାୟୀ ପକ୍ଷରେ ସମ୍ଭବପର ହେଉଥିବାରୁ ସେମାନେ ଏଥିରେ ଲକ୍ଷ ଲକ୍ଷ ଟଙ୍କା ବିନିଯୋଗ କରିବାକୁ ଉତ୍ସାହିତ ହୋଇଥାନ୍ତି, ସୁଦକ୍ଷ ଅଭିନେତାଙ୍କୁ ଅତି ଉଚ୍ଚ ବେତନାଦି ଦ୍ୱାରା ପ୍ରଲୁବ୍ଧ କରନ୍ତି ଓ ସେମାନଙ୍କ ନିମନ୍ତେ ନାନା ପ୍ରକାର ସୁବିଧା ସୁଯୋଗ ମଧ୍ୟ କରିଦେଇ ପାରନ୍ତି । ଏହାର ଫଳରେ ଅଭିନୟକୌଶଳ ବୃତ୍ତିମୂଳକ ହୋଇଉଠେ ଓ ସୌଖୀନ ନାଟ୍ୟ ଦଳର ସାମୟିକ ଉତ୍ସାହକୁ ପରିପୁଷ୍ଟ କରିବା ନିମନ୍ତେ ଯଥେଷ୍ଟ ଅର୍ଥାନୁକୂଲ୍ୟ ଓ ଉଚ୍ଚାଙ୍ଗ ନାଟକ ରଚନା ମଧ୍ୟ ସମ୍ଭବପର ହୁଏ ନାହିଁ । ଫଳରେ

ଗତ କୋଡ଼ିଏ ବର୍ଷ ମଧ୍ୟରେ ଚଳଚ୍ଚିତ୍ରର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇଅଛି ; ଅଭିନୟ, ଚିତ୍ର ଗ୍ରହଣପଦ୍ଧତି, ସଙ୍ଗୀତ ସମାବେଶ, ଚିତ୍ର ଗ୍ରହଣ ପ୍ରତିଷ୍ଠାନ ବା କଳାକର୍ମଶାଳା ପ୍ରଭୃତିର ଅତି ଦ୍ରୁତ ଉନ୍ନତି ଘଟିଅଛି, ଅନ୍ୟ ଦିଗରେ ନାଟକର ଶ୍ରୀବୃଦ୍ଧି ଅନେକାଂଶରେ ବ୍ୟାହତ ହୋଇଅଛି । ଅତି ଆନନ୍ଦର କଥା ଯେ ଦୁଇ ଚାରି ବର୍ଷ ହେଲା ନାଟକ ପ୍ରତି ଲୋକସାଧାରଣଙ୍କ ଦୃଷ୍ଟି ଅନେକାଂଶରେ ବିଦୂରିତ ହୋଇଅଛି, ଅଧିକରୁ ଅଧିକତର ନାଟକ ରଚିତ ହେଉଅଛି । ବ୍ୟବସାୟିମଣ୍ଡଳ ପ୍ରେକ୍ଷାଗୃହର ଉନ୍ନତି ସାଧନ ନିମନ୍ତେ ଉତ୍ସାହିତ ହେଉଅଛନ୍ତି ଓ ଅଭିନେତାମାନେ ନାନା ଉପାୟରେ ଅଭିନୟ ଦକ୍ଷତା ଅର୍ଜନ କରି ସ୍ଥାୟୀ ରଙ୍ଗମଞ୍ଚ ସହିତ ସମ୍ପୃକ୍ତ ହୋଇ ପାରୁଛନ୍ତି । ନାଟକର ଅଭ୍ୟୁଦୟ ପକ୍ଷରେ ଏ ସବୁ ଶୁଭ ଇଙ୍ଗିତ ବୋଲି ସ୍ୱୀକାର କରିବାକୁ ହେବ । କିନ୍ତୁ ଅନ୍ୟ ପ୍ରଦେଶରେ ନାଟକର ଓ ନାଟ୍ୟକଳାର ଯେପରି ଦ୍ରୁତ ଉନ୍ନତି ସାଧିତ ହେଉଅଛି ଓ ଏ ଦିଗରେ ଯେ ପ୍ରକାର ସମବେତ ଚେଷ୍ଟା ଓ ସାଧନାର ନିଦର୍ଶନ ମିଳୁଅଛି ଓଡ଼ିଶାରେ ତାହା ଦେଖାଯାଉ ନାହିଁ ।

ଓଡ଼ିଶାରେ ନାଟକର ବର୍ତ୍ତମାନ ଅବସ୍ଥା ଓ ଭବିଷ୍ୟତ ପ୍ରଗତି ସମ୍ବନ୍ଧରେ ଆମ୍ଭମାନଙ୍କୁ ବିଶେଷ ଭାବରେ ଚିନ୍ତା କରିବାକୁ ହେବ । ବିଗତ ଅଶୀତି ବର୍ଷ ମଧ୍ୟରେ ନାନା ଅସୁବିଧା ସତ୍ତ୍ୱେ ଓଡ଼ିଆ ନାଟକ ତାର ସତ୍ତା ହରାଇ ନାହିଁ । ଅଶୀତି ବର୍ଷ-ବ୍ୟାପୀ ଏହି ଜୀବିତ କାଳ ମଧ୍ୟରେ ଓଡ଼ିଆ ନାଟକ ଚାରିଗୋଟି ବିଶିଷ୍ଟ ପ୍ରଭାବ ଦ୍ୱାରା ପରିଚାଳିତ ହୋଇଅଛି ; ଅର୍ଥାତ୍ ଆନୁମାନିକ ପ୍ରତି କୋଡ଼ିଏ ବର୍ଷରେ ଓଡ଼ିଶାର ସାହିତ୍ୟିକ ଓ ରାଜନୈତିକ ଜୀବନରେ ନାନା ପରିବର୍ତ୍ତନ ସଙ୍ଗେ ସଙ୍ଗେ ନାଟକର ମଧ୍ୟ ବିବର୍ତ୍ତନ ସାଧିତ ହୋଇଅଛି । ୧୮୮୦ ସାଲ ବେଳକୁ ଓଡ଼ିଆ ନାଟକର ଜନ୍ମ ।

ସେତେବେଳେ ଧନାଢ୍ୟ ରାଜା ଜମିଦାରମାନଙ୍କର ଅର୍ଥାନୁକୂଲ୍ୟରେ ନବଶିକ୍ଷାପ୍ରାପ୍ତ ଉତ୍ସାହୀ ଯୁବକମାନଙ୍କର ଅଦମ୍ୟ ଚେଷ୍ଟାରେ ଉତ୍କଳଗୌରବ ମଧୁସୂଦନଙ୍କ ଭଳି ଦେଶପ୍ରେମୀ ସଂସ୍କୃତିସମ୍ପନ୍ନ ଜନନାୟକମାନଙ୍କ ପୃଷ୍ଠପୋଷକତାରେ ନାନା ସ୍ଥାନରେ ନାଟକ ଅଭିନୀତ ହେଉଥିଲା, କିନ୍ତୁ ସେତେବେଳେ ତାହା 'ଥିଲା ବହୁଳ ଅଂଶରେ ଆଭିଜାତ୍ୟର ଲକ୍ଷଣ, ଅଭିଜାତ ସମ୍ପ୍ରଦାୟର ଆନୁକୂଲ୍ୟରେ ବର୍ଦ୍ଧିତ ସେମାନଙ୍କ ବିଳାସ ବ୍ୟସନ ସହିତ ସମ୍ପୃକ୍ତ ସାହିତ୍ୟ ସାମଗ୍ରୀ । ଜନସାଧାରଣଙ୍କ ଜୀବନ ଏଥିରେ ରୂପାୟିତ ହେଉଥିଲା, କିନ୍ତୁ ଜନତା ଜୀବନ ପ୍ରତି କୌଣସି ଶ୍ରଦ୍ଧା ନ ଥିଲା, ଜନତାର ଜୀବନ ଦର୍ଶନ ସହିତ ଏହାର ସମ୍ପର୍କ ନ ଥିଲା । ଓଡ଼ିଆ ନାଟକ ଲେଖା ଆରମ୍ଭ ହେବାର ପ୍ରାୟ କୋଡ଼ିଏ ବର୍ଷ ପରେ ଓଡ଼ିଶାରେ ଜାତୀୟ ସଚେତନତାର ଉନ୍ମେଷ ହେଲା । ଜାତୀୟ ଉନ୍ମାଦନା ମଧ୍ୟରେ ଉତ୍କଳ ସମ୍ମିଳନୀ ସ୍ଥାପିତ ହେଲା । ଜାତୀୟ ଗୌରବରେ ଅନୁପ୍ରାଣିତ ହୋଇ ଓଡ଼ିଶାର ନେତୃସ୍ଥାନୀୟ ରାଜା ମହାରାଜାମାନେ ସାଧାରଣ ଲୋକଙ୍କୁ ପ୍ରକାଶ୍ୟ ସଭାରେ ଭାଇ ବୋଲି ଡାକିବାକୁ ଶିଖିଲେ । ଏକ ପ୍ରଦେଶବାସୀ ଓ ଏକ ଭାଷା-ଭାଷୀ ଭାବରେ ଜନତା ଓ ଅଭିଜାତଶ୍ରେଣୀ ମଧ୍ୟରେ ଏକ ଜାତୀୟତାର ସମ୍ପର୍କ ସ୍ଥାପିତ ହେଲା ଓ ଗଣଜାଗରଣର ମାଙ୍ଗଳିକ ଗୀତିରେ ସାହିତ୍ୟ ମୁଖରିତ ହୋଇ ଉଠିଲା । ଜାତୀୟ ଭାବର ଅଭିବୃଦ୍ଧି ଦ୍ୱାରା ସମାଜର ପ୍ରତ୍ୟେକ କ୍ଷେତ୍ରରେ, ସାହିତ୍ୟର ପ୍ରତ୍ୟେକ ବିଭାଗରେ ନୂତନ ଉନ୍ମାଦନା ସୃଷ୍ଟି ହେଲା । ନାଟକ ମଧ୍ୟ ଉତ୍କର୍ଷ ଲାଭ କଲା । କିନ୍ତୁ ସାଧାରଣ ପ୍ରେକ୍ଷାଗୃହ ପ୍ରତିଷ୍ଠିତ କରିବା ନିମନ୍ତେ ଓ ବୃତ୍ତିଧାରୀ ଅଭିନେତା ସଂପ୍ରଦାୟ ସଂଗଠିତ କରିବା ନିମନ୍ତେ ଚେଷ୍ଟା କରାଯାଇଥିଲେ ହେଁ ତାହା ସଫଳ ହୋଇ ପାରି ନଥିଲା ।

କେବଳ ନାଟକର ବିଷୟବସ୍ତୁ ମଧ୍ୟରେ ସାମାଜିକ ରୀତିନୀତିର ଚିତ୍ର ଅଧିକ ପରିମାଣରେ ଦେଖାଯାଇଥିଲା । ଜାତୀୟ ଜାଗରଣର ପ୍ରାୟ କୋଡ଼ିଏ ବର୍ଷ ପରେ ଆମ୍ଭେମାନେ ପ୍ରଥମ ବିଶ୍ୱଯୁଦ୍ଧର ସମାପ୍ତି କାଳରେ ଉପସ୍ଥିତ ହେଉ । ପ୍ରଥମ ବିଶ୍ୱଯୁଦ୍ଧର ବ୍ୟାପ୍ତି ଆକସ୍ମିକତା ଓ କ୍ଷତିର ପରିମାଣ ଅନୁଧ୍ୟାନ କରି ସଭ୍ୟ ଶିକ୍ଷିତ ମାନବ ବିସ୍ମୟ-ବିମୂଢ଼ ଓ ହତଚକିତ ହୋଇ ଯାଇଥିଲେ । ଏକ ଦିଗରେ ବିଳାସପୁଷ୍ଟ ସଭ୍ୟତା ଉପରେ ସେମାନଙ୍କ ଆସ୍ଥା ଲୋପ ପାଇବାକୁ ବସିଲା, ଜୀବନର ମୂଲ୍ୟ ବିଷୟରେ ନୂତନ ଦୃଷ୍ଟିଭଙ୍ଗୀର ସୃଷ୍ଟି ହେଲା ଓ ବିଜ୍ଞାନର ଅବ୍ୟାହତ ଜୟଯାତ୍ରା ବିଷୟରେ ସନ୍ଦେହ ଜାତ ହୋଇ ଆଧ୍ୟାତ୍ମିକ ଜୀବନ ପ୍ରତି ଆକର୍ଷଣ ବୃଦ୍ଧିପ୍ରାପ୍ତ ହେଲା । କିନ୍ତୁ ସଙ୍ଗେ ସଙ୍ଗେ ଜୀବନକୁ ନୂତନ ପଥରେ ଚାଳିତ କରିବା ନିମନ୍ତେ ବଦ୍ଧପରିକର ଦଳେ ନୂତନ ସାହିତ୍ୟିକଙ୍କର ଅଭ୍ୟୁଦୟ ମଧ୍ୟ ଘଟିଲା । ସାହିତ୍ୟିକମାନେ ଅନ୍ତର୍ଦୃଷ୍ଟିଦ୍ୱାରା ମନକୁ ବିଶ୍ଳେଷଣ କରିବାରେ ପ୍ରବୃତ୍ତ ହେଲେ । ପ୍ରାଣପ୍ରାଚୁର୍ଯ୍ୟରେ ଉଦ୍‌ବୁଦ୍ଧ ହୋଇ ଯୌବନର ଜୟଯାତ୍ରାରେ ଭାଗ ନେବା ସକାଶେ ଆଗେଇ ଆସିଲେ । ଲୋକଙ୍କର ଜୀବନମାନ ଓ ଜୀବନାଦର୍ଶ ରୂଢ଼ ବାସ୍ତବର ଆଘାତରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବାରୁ ଅନେକ ଲୋକ କେବଳ ପ୍ରାଣ-ଚଞ୍ଚଳ ଉଦ୍‌ବେଳିତ ହୃଦୟାବେଗକୁ ଅନୁସରଣ କରିବାକୁ ଶିଖିଲେ ; ଲୋକେ ମନେ-କଲେ ଯେ ବଞ୍ଚି ରହିବା ହିଁ ଯେଉଁଠାରେ ଏକ ଅତ୍ୟାଶ୍ଚର୍ଯ୍ୟ ବ୍ୟାପାର, ସେଠାରେ ଜୀବନର ଆଦର୍ଶାଦି ବିଷୟରେ କୌଣସି ପ୍ରଶ୍ନ କରିବା ସମୀଚୀନ ନୁହେଁ । କେତେକ ଲୋକଙ୍କର ଅନ୍ତର୍ଦୃଷ୍ଟି ବଢ଼ିଲା, ଜୀବନ ବିଷୟରେ ଗଭୀର ପ୍ରଶ୍ନ ସେମାନଙ୍କ ମନକୁ ଅଭିଭୂତ କଲା । କିନ୍ତୁ ଯେଉଁ ସୁସମାହିତ ଆତ୍ମସ୍ଥ ଜୀବନାଦର୍ଶ ବୈଦିକ କାଳରୁ ଭାରତକୁ ଆଧ୍ୟାତ୍ମିକ ପ୍ରେରଣା ଦେଇଥିଲା, କିମ୍ବା

ଜନପ୍ରିୟ କରୁଣା ଚିତ୍ରୋରୂପ ଯେଉଁ ଆଦର୍ଶାବଳୀଦ୍ୱାରା ଭାରତର ସାହିତ୍ୟ ଉଦ୍‌ବୁଦ୍ଧ ହୋଇଥିଲା ; ସେ ସମସ୍ତଙ୍କୁ ଏଡ଼ି ଦେଇ ଲୋକେ ଉତ୍ତେଜନାପୂର୍ଣ୍ଣ ଜୀବନକୁ ଉପଭୋଗ କରିବାକୁ ଶିଖିଲେ । ଜୀବନ ଅତି କ୍ଷଣସ୍ଥାୟୀ, କିନ୍ତୁ ପ୍ରାଚୀନ ସାହିତ୍ୟରେ କ୍ଷଣସ୍ଥାୟିତ୍ୱର ପ୍ରତି-ଷେଧକରୂପେ ଚ..ନ୍ତନ ଆଧ୍ୟାତ୍ମିକ ସତ୍ୟ କଳ୍ପିତ ହୋଇଥିଲା । ନବୀନ ଯୁଗରେ ଇଉରୋପୀୟ ବାସ୍ତବବାଦୀ ସାହିତ୍ୟର ମର-ଜୀବନର ନଶ୍ୱରତା ସ୍ମରଣ କରି ସାହିତ୍ୟିକମାନେ ଉତ୍ତେଜନାପୂର୍ଣ୍ଣ ଜୀବନର ଯାନପାନକୁ ନିଃଶେଷ କରି ଉପଭୋଗ କରିବାଦ୍ୱାରା ନଶ୍ୱରତାକୁ ବିସ୍ମୃତ ହେବାକୁ ଚେଷ୍ଟା କଲେ । ଫଳରେ ସାହିତ୍ୟ, ବିଶେଷରେ ନାଟ୍ୟସାହିତ୍ୟରେ ନୂତନ ସ୍ରୋତ ପ୍ରବେଶ କଲା, ନୂତନ ଆଦର୍ଶ ପ୍ରତିଷ୍ଠିତ ହେଲା, ନୂତନ କଳା ଜନ୍ମଗ୍ରହଣ କଲା । ଏହି ପରିବେଶରେ ଏକ ଦିଗରେ ସବୁଜ ସାହିତ୍ୟର ଉନ୍ମେଷ, ବ୍ୟବସାୟୀ ନାଟ୍ୟ ସଂଘର ପ୍ରତିଷ୍ଠା, ଅଭିନୟ ଓ ନୃତ୍ୟଗୀତାଦିକୁ ବୃତ୍ତି ରୂପେ ସ୍ୱୀକାର କରିନେବାର ଆକାଙ୍କ୍ଷା ଜାତ ହୋଇ ନାଟକକୁ ନୂତନ ଦିଗରେ ପରିଚାଳିତ କଲା । ପୁଣି ଏହି ସମୟରେ ଯୁଗାନୁସାରୀ ଜୀବନ ସ୍ରୋତ ବିରୁଦ୍ଧରେ ପ୍ରତିବାଦ ରୂପେ କଳ୍ପିତ ସତ୍ୟବାଦୀରେ ପ୍ରତିଷ୍ଠିତ ଆଶ୍ରମ ଶିକ୍ଷାରୀତି ମଧ୍ୟ ନାନା ବିପର୍ଯ୍ୟୟର ସମ୍ମୁଖୀନ ହୋଇ କିଛି ଦିନ ପରେ ଅବଲୁପ୍ତ ହୋଇଗଲା । ଏହା ପରେ କୋଡ଼ିଏ ବର୍ଷ ନ ଯାଉଣୁ ପୁଣି ଦ୍ୱିତୀୟ ବିଶ୍ୱଯୁଦ୍ଧର ଆରମ୍ଭ । ସର୍ବାତ୍ମକ ଯୁଦ୍ଧ ପ୍ରଚେଷ୍ଟାର ଫଳରୂପେ ସାହିତ୍ୟର ଗତି ପ୍ରାୟ ରୁଦ୍ଧ, ପରିପ୍ରଚାରର ପ୍ରୟୋଜନ ଅନୁଭୂତ ହେବାରୁ ସାହିତ୍ୟ ଲୋକସମ୍ପର୍କ ପ୍ରତିଷ୍ଠା ଦିଗରେ ବିନିଯୋଜିତ । ଯୁଦ୍ଧର ଅବ୍ୟବହିତ ପୂର୍ବରୁ ବର୍ତ୍ତମାନ ଯୁଗର ସର୍ବାଧୁନିକ କାଳର ଆରମ୍ଭ । ଏହି ସମୟରେ ଓଡ଼ିଶାର ପୃଥକ୍ ସତ୍ତା ସ୍ୱୀକୃତ ହୋଇଥିଲେ ମଧ୍ୟ ଯୁଦ୍ଧର

ପ୍ରସୂତି ଓ ରାଜନୀତିର ଉନ୍ମାଦନା ମଧ୍ୟରେ ତାହା ସାହିତ୍ୟକୁ ପ୍ରଭାବିତ କରିପାରି ନାହିଁ । ଏହି କାଳ ମଧ୍ୟରେ ପୁଣି ନୂତନ ପ୍ରତିଷ୍ଠିତ ସାମ୍ୟବାଦୀ ଗଣତନ୍ତ୍ର ଆଦର୍ଶ ରୂପେ ସ୍ୱୀକୃତି ପାଇଅଛି । ମେହେନତି ପୁରୁଷମାନଙ୍କର କର୍ମପ୍ରଚେଷ୍ଟା ସମାଜରେ ଉଚ୍ଚ ମର୍ଯ୍ୟାଦାର ଅଧିକାରୀ ହୋଇଅଛି । ଦଳିତ ସର୍ବହରା ପ୍ରତି ସ୍ୱତଃ ସମବେଦନା ଜାତ ହୋଇଅଛି । ନୂତନ ସମାଜ ବ୍ୟବସ୍ଥାର ଫଳ ସ୍ୱରୂପ ସାହିତ୍ୟର ବିଷୟବସ୍ତୁ ଓ ଦୃଷ୍ଟିକୋଣରେ ମଧ୍ୟ ବିରାଟ ପରିବର୍ତ୍ତନ ଘଟିଅଛି । ଅନ୍ୟ ଦିଗରେ ସଦାବିପନ୍ନ, ଅଭାବକ୍ଲିଷ୍ଟ, ନୀତିଭ୍ରଷ୍ଟ, ବିପର୍ଯ୍ୟସ୍ତ ଜୀବନରେ ଆଧ୍ୟାତ୍ମିକ ଆଦର୍ଶର ପ୍ରୟୋଜନ ଅନୁଭୂତ ହୋଇଅଛି ଓ ପ୍ରେମର ରସାନ୍ୱିତ ପ୍ରଲେପଦ୍ୱାରା ବିପର୍ଯ୍ୟସ୍ତ ଜୀବନରେ ମାଧୁର୍ଯ୍ୟ ସଞ୍ଚାରିତ କରିବାର ଚେଷ୍ଟା କରାଯାଇଅଛି । ଯୁଦ୍ଧର ଅବ୍ୟବହିତ ପରେ ଭାରତ ସ୍ୱାଧୀନ ହୋଇଅଛି, ଦେଶର କୃଷ୍ଟିଗତ ଐକ୍ୟ ସ୍ୱୀକୃତ ହୋଇଅଛି । ସାଂସ୍କୃତିକ ଐକ୍ୟ ପ୍ରତିଷ୍ଠିତ କରିବା ନିମନ୍ତେ ଅକ୍ଳାନ୍ତ ପ୍ରୟାସର ପ୍ରୟୋଜନ ଅନୁଭୂତ ହୋଇଅଛି । ନାଟକ ଆଜିକାଲି କେବଳ ସାମୟିକ ଆନନ୍ଦ ପରିବେଷଣ କରିବାରେ ନିଯୁକ୍ତ ନୁହେଁ, ନାଟକ ଆଜି ଶିକ୍ଷାର ବାହନ, କୃଷ୍ଟିର ନିୟାମକ, ଜୀବନଦ୍ୱନ୍ଦ୍ୱର ପ୍ରଶାମକ, ଜାତୀୟ ଅଭିବୃଦ୍ଧିର ପରିପୂରକ ରୂପେ କଳ୍ପିତ ।

ଏହି ପରିପ୍ରେକ୍ଷୀରେ ଓଡ଼ିଆ ନାଟକର ବିଚାର କରିବା ସମୟରେ ଆମ୍ଭେମାନେ ଅନେକ ସମୟରେ ହତାଶ ହୋଇ ପଡ଼ୁ । ସଂଖ୍ୟାଗତ ଅପ୍ରାଚୁର୍ଯ୍ୟ ସହିତ ଗୁଣଗତ ଅନୁତ୍କର୍ଷ ଆମ୍ଭମାନଙ୍କୁ ନିରାଶ କରିଦିଏ । ଦୁର୍ଭାଗ୍ୟବଶତଃ ଚିରସୁଲଭ ଆତ୍ମସନ୍ତୁଷ୍ଟି କିମ୍ବା ଅନ୍ୟ ପ୍ରଦେଶର ପ୍ରଶଂସା ବା ବିସ୍ମୟ ଦ୍ୱାରା ଅନୁପ୍ରାଣିତ ହୋଇ ଆତ୍ମପ୍ରସାଦଜନିତ କର୍ମବିମୁଖତା ମୁଁ ଆୟତ୍ତ କରି ନାହିଁ କିମ୍ବା

ନିଜର ଅଭାବ ଉପଲବ୍ଧି କରି ଅବସନ୍ନ ହେବା ମଧ୍ୟ ମୁଁ ଅନୁଚିତ ମନେକରେ । ପ୍ରଥମରେ ଅନ୍ୟ ସାହିତ୍ୟ ସହିତ ପରିଚୟ ପ୍ରୟୋଜନ, ତତ୍ପରେ ପ୍ରଗାଢ଼ ଅଧ୍ୟବସାୟ ଦ୍ୱାରା ନିଜକୁ ଉନ୍ନତ କରିବାର ଚେଷ୍ଟା ଆବଶ୍ୟକ । ଅନେକ ଦିନ ପୂର୍ବେ ଉଚ୍ଚାଙ୍ଗ ନାଟ୍ୟ ସାହିତ୍ୟ ଅନୁବାଦର ପ୍ରୟୋଜନ ଅନୁଭବ କରି ମୁଁ Maeterlinkଙ୍କ Blue Bird ନାମକ ନାଟକକୁ ଓଡ଼ିଆରେ ଅନୁବାଦ କରି ଉତ୍କଳ ସାହିତ୍ୟରେ ପ୍ରକାଶିତ କରିଥିଲି । କିନ୍ତୁ ତାପରେ ଅଧୁନାତନ କାଳ ପର୍ଯ୍ୟନ୍ତ Bernard Shawଙ୍କର Plays unpleasantର ବିରସ ନାଟକ ନାମରେ ଅନୁବାଦ ଭିନ୍ନ ଅନ୍ୟ କୌଣସି ଉଚ୍ଚାଙ୍ଗ ନାଟକର ଅନୁବାଦ ହୋଇ ପାରିନାହିଁ । ଫଳରେ ନାଟକ ଲେଖକ-ମାନଙ୍କର ଉଚ୍ଚାଙ୍ଗ ନାଟକ ସହିତ ନିବିଡ଼ ପରିଚୟ ନ ଥିବାରୁ ଓ ନାଟକ ବିଦ୍ୟାର ବିଷୟରେ ଅଭିଜ୍ଞତା ବା ଜ୍ଞାନାର୍ଜ୍ଜନ ସ୍ପୃହା ନ ଥିବାରୁ କେବଳ ଗତାନୁଗତିକ ନାଟକ ଭିନ୍ନ ଉଚ୍ଚାଙ୍ଗ ନାଟକ ଓଡ଼ିଆରେ ରଚିତ ହୋଇ ପାରିନାହିଁ । ଏଥି ସଙ୍ଗେ ବହୁ ବ୍ୟୟସାଧ୍ୟ ଆଧୁନିକ ପ୍ରେକ୍ଷାଗୃହ, ବୈଜ୍ଞାନିକ ଶିକ୍ଷାସମୃଦ୍ଧ ଆଲୋକ ସମ୍ପାତାଦି ବିଷୟରେ ଅଭିଜ୍ଞତା ପ୍ରଭୃତି ନାନା ବିଷୟର ପ୍ରୟୋଜନ, କାରଣ ଏ ସବୁ କ୍ଷେତ୍ରରେ ଅନ୍ୟ ଦେଶଗୁଡ଼ିକ ସ୍ୱତଃ ଅଗ୍ରସର । ସେମାନଙ୍କ ସହିତ ଗତିରେ ସାମଞ୍ଜସ୍ୟ ରଖିବାକୁ ହେଲେ ଯେଉଁ ପରିମାଣରେ ବ୍ୟୟ କରିବା ପ୍ରୟୋଜନ ବା ନିଷ୍ଠାପର ସାଧନା ଆବଶ୍ୟକ ତାହା ଆମ୍ଭମାନଙ୍କ ପକ୍ଷରେ ଦୁଃସାଧ୍ୟ ।

ଯଦି ଆମ୍ଭେମାନେ ବୈଦେଶିକ ରୀତିକୁ ଏଡ଼ିଦେଇ ନିଜର ଐତିହ୍ୟ ଓ ପରମ୍ପରାକୁ ଆଶ୍ରୟ କରି ଅଗ୍ରସର ହୋଇଥାଆନ୍ତୁ ତେବେ ସାହିତ୍ୟିକ ଉତ୍କର୍ଷ ଆମ୍ଭମାନଙ୍କର ସହଜଲଭ୍ୟ ହୋଇଥାନ୍ତା, କିନ୍ତୁ ଓଡ଼ିଆ ନାଟକ ମୂଳରୁ ବୈଦେଶିକ ପ୍ରଭାବଦ୍ୱାରା

ପ୍ରଭାବିତ । ଓଡ଼ିଆ ନାଟକ ରଚନାରେ ବର୍ତ୍ତମାନ ଯେଉଁ ଧାରା ଦେଖାଯାଏ, ସେଥି ମଧ୍ୟରେ ଏକ ଦିଗରେ Shakespeareଙ୍କ ଅନୁସୃତ ଧାରା, ଅନ୍ୟ ଦିଗରେ Ibsen ପ୍ରଭୃତିଙ୍କ ଅନୁସୃତ ଧାରା ହିଁ ପ୍ରଧାନ । ଅବଶ୍ୟ Bernard Shaw ପ୍ରଭୃତିଙ୍କ ନିଜସ୍ୱ ଶୈଳୀ ଅଛି ଓ ସେମାନଙ୍କ ଦ୍ୱାରା ନାନା ନୂତନ ଦିଗରେ ନାଟକର ଅଭିବୃଦ୍ଧି ମଧ୍ୟ ଘଟିଥିଲା । କିନ୍ତୁ ଓଡ଼ିଆ ନାଟ୍ୟକାରମାନେ ପ୍ରଧାନତଃ ସେକ୍‌ସପିୟରୀୟ ରୀତି ଓ ଇବସେନୀୟ ରୀତିର ଅନୁସରଣ କରି-ଅଛନ୍ତି, ଯେଉଁ ନାଟ୍ୟ ରୀତି ଓ ରସ ସୃଷ୍ଟି ସଂସ୍କୃତ ନାଟକ ପକ୍ଷରେ ସୁମହାନ ଐତିହ୍ୟ ସୃଷ୍ଟି କରିଥିଲା, ଯେଉଁ ସଙ୍ଗୀତ-ଝଙ୍କାର ଓଡ଼ିଆ ହୃଦୟରେ ଆଲୋଡ଼ନ ସୃଷ୍ଟି କରି ପାରୁଥିଲା, ତାହା ଓଡ଼ିଆ ନାଟକରେ ପ୍ରଥମରୁ ପରିହାର କରାଯାଇଥିଲା, ବରଂ ରାଗ ସଙ୍ଗୀତ ପରିବର୍ତ୍ତେ ବଙ୍ଗଳାର ଅନୁକରଣରେ ଥିଏଟରର ସଙ୍ଗୀତରୂପକ ମିଶ୍ରସଙ୍ଗୀତ ପ୍ରଚଳିତ ହୋଇଥିଲା । ବିଭିନ୍ନ କ୍ଷେତ୍ରରେ ଲୋକେ ନାଟ୍ୟଶାସ୍ତ୍ର ବା ଅଭିନୟ ଦର୍ପଣ ପ୍ରଭୃତି ଗ୍ରନ୍ଥକୁ ସମ୍ପୂର୍ଣ୍ଣ ବିସ୍ମୃତ ହୋଇ କେବଳ ଅନ୍ଧାନୁସରଣର ଅକ୍ଷମ ପଦକ୍ଷେପକୁ ଯଥେଷ୍ଟ ବୋଲି ମନେ କରୁଥିଲେ । ଉତ୍କଳର ଦକ୍ଷିଣ ପ୍ରାନ୍ତର ରାଜା ଜମିଦାରମାନେ ଅବଶ୍ୟ ପ୍ରଥମରୁ ସଂସ୍କୃତ ନାଟକର ଅନୁକରଣରେ ନାଟକ ରଚନାରେ ପ୍ରବୃତ୍ତ ହୋଇଥିଲେ । କିନ୍ତୁ ସେମାନଙ୍କର ଲେଖାରେ ବକ୍ତବ୍ୟର ଚମତ୍କାରିତ୍ୱ ଓ ବାକ୍ୟର ନିପୁଣତା ଥିଲେ ହେଁ ସେଗୁଡ଼ିକ ଶକ୍ତିହୀନ ଲେଖକର ଅକ୍ଷମ ରସସୃଷ୍ଟି ପ୍ରୟାସର ଅନ୍ତର୍ଗତ । ଅଳଙ୍କାରର ପ୍ରାଚୁର୍ଯ୍ୟ ଓ ଅଯଥା ସଂସ୍କୃତ ଶବ୍ଦ କଣ୍ଟକିତ ଭାଷା ସେମାନଙ୍କର ସାହିତ୍ୟ ସୃଷ୍ଟିକୁ ମନ୍ଦଗତି କରିଥିଲା । ଅତି ଶୀଘ୍ର ସେଗୁଡ଼ିକ ଓଡ଼ିଆ ନାଟ୍ୟ ସାହିତ୍ୟ-କ୍ଷେତ୍ରରୁ ଅପସୃତ ହୋଇ ଯାଇଅଛନ୍ତି । ଓଡ଼ିଆ ନାଟକ ପ୍ରଥମରୁ

ବୈଦେଶିକ ଶାସ୍ତର ଅନୁକରଣରେ ପ୍ରବୃତ୍ତ ହୋଇ ବର୍ତ୍ତମାନ ପର୍ଯ୍ୟନ୍ତ ସୁପ୍ରତିଷ୍ଠିତ ହୋଇ ପାରିନାହିଁ ଓ ରସୋତ୍ତୀର୍ଣ୍ଣ ନାଟକ ବିଷୟରେ ବର୍ତ୍ତମାନ ପର୍ଯ୍ୟନ୍ତ ଲୋକଙ୍କର ଆସ୍ଥା ଜାତ ହୋଇ ପାରିନାହିଁ । ଅବଶ୍ୟ ଚଳଚ୍ଚିତ୍ରର ଜନପ୍ରିୟତା ଓ ସମାଜର ରୁଚି ବିପର୍ଯ୍ୟୟ ଏଥି ନିମନ୍ତେ ଅନେକାଂଶରେ ଦାୟୀ, କିନ୍ତୁ ଯଦି ପ୍ରଥମରୁ ନାଟକ କ୍ଷେତ୍ରରେ ସୁସ୍ଥିର ପରମ୍ପରା ଓଡ଼ିଶାରେ ଗଢ଼ି ଉଠିଥାଆନ୍ତା ତେବେ ନାଟ୍ୟ-ସାହିତ୍ୟ କ୍ଷେତ୍ରରେ ବର୍ତ୍ତମାନ ଦୁର୍ଦ୍ଦଶା ଆମ୍ଭମାନଙ୍କୁ ଭୋଗ କରିବାକୁ ପଡ଼ନ୍ତା ନାହିଁ । ନାଟକର ଆରମ୍ଭ ସମୟରୁ ଆମ୍ଭେମାନେ ନିଜସ୍ୱ ସାହିତ୍ୟ ଗଠନ କରିବାକୁ ଚେଷ୍ଟା କରିନାହୁଁ, ପ୍ରଥମ ଅବସ୍ଥାରେ ଅମିତ୍ରାକ୍ଷରର ମୋହରେ ଅବାସ୍ତବ ପଦ୍ୟମୟ ନାଟକ ସୃଷ୍ଟି କରିଚୁ, ପରବର୍ତ୍ତୀ ଯୁଗରେ ସବୁଜ ସାହିତ୍ୟର ଅନୁପ୍ରେରଣାରେ ଗଦ୍ୟମୟ ଚମକପ୍ରଦ ବାକ୍ୟଯୋଜନା ମଧ୍ୟରେ ସାହିତ୍ୟରସକୁ ପରିହାର କରି ଗୁଲିଚୁ । ସ୍ୱାଧୀନତାର ପ୍ରମତ୍ତ ଅଭିଯାନରେ ସ୍ୱୈରାଚାରର ପ୍ରସାର ଘଟିଅଛି, ସାହିତ୍ୟ କ୍ଷେତ୍ରରେ ଶୃଙ୍ଖଳା ଜ୍ଞାନ ଓ ମାତ୍ରାନୁରକ୍ତି ଅପସୃତ ହୋଇଅଛି, କିନ୍ତୁ ତା ପୂର୍ବରୁ ସବୁଜ ସାହିତ୍ୟର ଅଭ୍ୟୁଦୟ ସମୟରୁହିଁ ଅସାହିତ୍ୟିକ ଲେଖକମାନଙ୍କର ଉଚ୍ଛୃଙ୍ଖଳତାରୁ ଓ ସାହିତ୍ୟ ମଧ୍ୟରେ ବ୍ୟବସାୟୀ-ଶାସ୍ତର ପ୍ରସାରଜନିତ ଅପରିଚ୍ଛିନ୍ନ ହେତୁରୁ ଏଥିପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇ ରହିଥିଲା । ସବୁଜ ସାହିତ୍ୟ ବିପ୍ଳବୀ ସାହିତ୍ୟ, ଏହାର ଦୃଷ୍ଟି କୋଣ ଭିନ୍ନ, ପ୍ରକାଶଶାସ୍ତ ଭିନ୍ନ, ରସପରିଣତି ମଧ୍ୟ ଭିନ୍ନ । ଏଣୁ କେବଳ ଶକ୍ତିମାନ୍ ସାହିତ୍ୟିକ ଏହି ସାହିତ୍ୟକୁ ସୁମାର୍ଗରେ ପରିଚାଳିତ କରିପାରନ୍ତି । ଓଡ଼ିଶାରେ ଅତି ଅଳ୍ପକ୍ଷେତ୍ରରେ ଏପରି ସାହିତ୍ୟ ରସୋତ୍ତୀର୍ଣ୍ଣ ହୋଇ ପାରିଅଛି । ଫଳରେ ନାଟ୍ୟସାହିତ୍ୟ, କ୍ଷେତ୍ରରେ ବର୍ତ୍ତମାନ ଗୋଟିଏ ସନ୍ଧି ସମୟ ଉପୁଜିଅଛି, ପ୍ରେରଣାର

ଅସଦ୍ଭାବ ପଦେ ପଦେ ଅନୁଭୂତ ହେଉଅଛି, ପ୍ରତିଭାର ଅଭାବରୁ ସାହିତ୍ୟକ ଅଗ୍ରଗତି ବ୍ୟାହତ ହେଉଅଛି । ବର୍ତ୍ତମାନଠାରୁ ସାବଧାନ ନ ହେଲେ ଆମ୍ଭମାନଙ୍କର ନାଟ୍ୟସାହିତ୍ୟ ଦେଶ ବିଦେଶର ନାଟ୍ୟ-ସାହିତ୍ୟ ସହିତ ତୁଳନୀୟ ହୋଇପାରିବ ନାହିଁ ।

ଆଜିକାଲି ସାହିତ୍ୟର ସବୁ କ୍ଷେତ୍ରରେ ପ୍ରତିଭା ଅପେକ୍ଷା ସାଧନାର ସ୍ଥାନ ଉଚ୍ଚତର । ପୂର୍ବେ କେବଳ ସୃଷ୍ଟି କରିବା ହିଁ ସାହିତ୍ୟିକର ଲକ୍ଷ୍ୟ ଥିଲା, ସୃଷ୍ଟି କରିବା ମଧ୍ୟ ସହଜସାଧ୍ୟ ଥିଲା । କାରଣ ବିଶ୍ୱରଧାରାର ସୂକ୍ଷ୍ମ ଅପପେଷଣ ପଦେ ପଦେ ପ୍ରତିଭାକୁ ସଙ୍କୁଚିତ କରୁ ନ ଥିଲା, ପ୍ରତିଭାର ସ୍ୱତଃସ୍ଫୂର୍ତ୍ତି ଅଭିବ୍ୟକ୍ତି ନାନା ମତବାଦ ଦ୍ୱାରା କ୍ଳିଷ୍ଟ ଓ ବିଭ୍ରାନ୍ତ ହେଉ ନ ଥିଲା । ଯେଉଁମାନେ ସାହିତ୍ୟରେ ପଥିକୃତ୍ ସେମାନେ ନମସ୍ୟ, ଯେଉଁମାନେ ଅକ୍ଳାନ୍ତ ଭାବରେ ସାହିତ୍ୟ ସୃଷ୍ଟିରେ ନିୟୋଜିତ ରହି ନୂତନ ନୂତନ ରସର ସନ୍ଧାନ ଦେଇଛନ୍ତି ସେମାନଙ୍କ ଦାନ ଜାତି କେବେହେଁ ଭୁଲି ପାରିବ ନାହିଁ । କିନ୍ତୁ ବର୍ତ୍ତମାନ ପ୍ରତ୍ୟେକ ଦିନ ବିଭିନ୍ନ ସାହିତ୍ୟରେ ଏତେ ନୂତନ ପ୍ରକାର ଶିଳ୍ପର ସନ୍ଧାନ ମିଳୁଅଛି; ଦେଶ ବିଦେଶର ସାହିତ୍ୟ ସୃଷ୍ଟି ସଙ୍ଗେ ଆମ୍ଭମାନଙ୍କର ପରିଚୟ ଏତେ ନିବିଡ଼ ହେଉଅଛି, ସାହିତ୍ୟର ନାନା କ୍ଷେତ୍ରରେ ଏପରି ନୂତନ ବିଶ୍ୱରଧାରା ପ୍ରବର୍ତ୍ତିତ ହେଉଅଛି ଯେ, ସେ ସମସ୍ତଙ୍କୁ ଆୟତ୍ତ କରି ନ ପାରିଲେ ବର୍ତ୍ତମାନ କୌଣସି ସାର୍ଥକସୃଷ୍ଟି କରିବା ଅସମ୍ଭବ । ଆଜିକାଲି ପ୍ରତ୍ୟେକ ବିଷୟରେ ଅଗ୍ରଗତି ବହୁ ବ୍ୟୟସାଧ୍ୟ, ପ୍ରତ୍ୟେକ କ୍ଷେତ୍ରରେ ପରିକଳ୍ପନା ବହୁ ଜନସାଧ୍ୟ, ପ୍ରତ୍ୟେକ ନୂତନ ସୃଷ୍ଟିର ବିଶ୍ୱରଧାରାକୁ ଆୟତ୍ତ କରିବା ବହୁ ଜ୍ଞାନସାଧ୍ୟ, ଏଣୁ ଜନତାର ସମୃଦ୍ଧ ସୁପରିକଳ୍ପିତ ରୁଚିବୋଧ, ଶାସକ ଗୋଷ୍ଠିର ଅକୁଣ୍ଠ ଅର୍ଥାନୁ-କୂଲ୍ୟ, ବିଶ୍ୱବିଦ୍ୟାଳୟ ପ୍ରଭୃତିର ବିଦ୍ୟାଚର୍ଚ୍ଚା ବିଷୟରେ

ପରକଳ୍ପିତ ସାହାଯ୍ୟର ସମନ୍ୱୟ ବିନା କୌଣସି ଉଲ୍ଲେଖ-ଯୋଗ୍ୟ ସାଧନା ସାପେକ୍ଷ ନାଟ୍ୟସାହିତ୍ୟ ସୃଷ୍ଟି ସମ୍ଭବପର ହେବନାହିଁ । ଏକ ଦିଗରେ ସୁଷ୍ଠୁ ସମାଲୋଚନା ଗଢ଼ି ଉଠିବ; ଅନ୍ୟ ଦିଗରେ ଉପଯୁକ୍ତ ରଙ୍ଗମଞ୍ଚ ପ୍ରତିଷ୍ଠିତ ହେବ, ତୃତୀୟତଃ ଜନତା ନାଟକାଭିମୁଖୀ ହେବେ, ଚତୁର୍ଥତଃ ନୂତନ ନୂତନ ସୃଷ୍ଟିର ଉନ୍ମାଦନା ଜାତିକୁ ଅନୁପ୍ରାଣିତ କରିବେ, ତେବେ ଓଡ଼ିଶାରେ ନାଟ୍ୟସାହିତ୍ୟର ଯଥାଯଥ ଅଭିବୃଦ୍ଧି ଘଟିବ । ଏଗୁଡ଼ିକ ସାଧନା-ସାପେକ୍ଷ ।

ନାଟକର ପ୍ରଥମ ପ୍ରୟୋଜନ କଥାବସ୍ତୁ, ଏ ବିଷୟରେ ଓଡ଼ିଆ ନାଟ୍ୟସାହିତ୍ୟର ଦୈନ୍ୟ ସୁସ୍ପଷ୍ଟ । କେବଳ ପୌରା-ଣିକ ଉପାଖ୍ୟାନ ବା ଐତିହାସିକ ଉପାଖ୍ୟାନ ବା ଅଳ୍ପ କେତୋଟି ସାମାଜିକ ସମସ୍ୟା ଘେନି ନାଟକର କଥାବସ୍ତୁ ରଚିତ ହୋଇପାରେ ନାହିଁ । ପରିଚିତ ଉପାଖ୍ୟାନ ମନୋଜ୍ଞ ହୋଇପାରେ, ଜାତୀୟତା ପରିପୋଷକ କଥାବସ୍ତୁ ସାମୟିକ ଉନ୍ମାଦନା ଆଣିପାରେ, ସାମା-ଜିକ ଚିତ୍ର ଚିତ୍ତବିନୋଦନର ଉପାୟ ହୋଇପାରେ କିନ୍ତୁ ଯେଉଁ ଗୁଣଦ୍ୱାରା ନାଟକର କଥାବସ୍ତୁକୁ ସୃଷ୍ଟି ବୋଲି ସ୍ୱୀକାର କରାଯାଇ ପାରେ ତାହା କେବଳ ଏତିକରେ ପର୍ଯ୍ୟବସିତ ବୋଲି ମନେ କରିବା ଭୁଲ । ମାନବର ବହୁମୁଖୀ ଜୀବନଧାରା କୌଣସି ଗତାନୁଗତିକ କଥାବସ୍ତୁ ମଧ୍ୟରେ ପ୍ରତିଫଳିତ ହୋଇ ପାରେ ନାହିଁ । ନୂତନ କଥାବସ୍ତୁର ଇଙ୍ଗିତ ଦେବାରେ ଅଶ୍ୱିନୀବାବୁଙ୍କର 'ଅଭିନୟ' ଓ ଛୋଟରାୟଙ୍କ "ପରକଲମ" ଉଲ୍ଲେଖଯୋଗ୍ୟ । କିନ୍ତୁ ଏଭଳି ନାଟକର ଅଭ୍ୟୁତ୍ଥାନ କାଳରେ ପୁଣି 'ଠ୍ରମ୍ପୀ' ନାଟକ ରଚିତ ଓ ଅଭିନୀତ ହେଉଅଛି ଏବଂ ଛୋଟରାୟ 'ନଷ୍ଟଉର୍ବଶୀ' ରଚନା କରି ପଦ୍ଧତନ କଥାବସ୍ତୁ ଘାତକୁ ଫେରିଯିବାକୁ ସଚେଷ୍ଟ ହେଉଅଛନ୍ତି ।

ଆଜକାଲି ନାଟକର ହାସ୍ୟରସ କେବଳ ସାମୟିକ ଚିତ୍ତ-ବିନୋଦନ ନିମନ୍ତେ କଳ୍ପିତ ନୁହେଁ, କରୁଣ ରସ ମଧ୍ୟ ଜୀବନର ନିଗୂଢ଼ ଅନ୍ତର୍ଦୃଷ୍ଟି ସହିତ ଅସମ୍ପୃକ୍ତ ନୁହେଁ । କିନ୍ତୁ ଓଡ଼ିଆ ନାଟକରେ ଏଥିର ସୂଚନା ଆମ୍ଭେମାନେ ପାଉନାହୁଁ । ନାଟକ ମଧ୍ୟରେ ଉପଦେଶମୂଳକ ପରିହାସବିକଳ୍ପିତ ବଚନର ପ୍ରୟୋଜନ ସର୍ବଦା ଉପଲବ୍ଧି ହୁଏ, କାରଣ ନାଟକ ମନୋରଞ୍ଜନ ନିମନ୍ତେ କଳ୍ପିତ, କିନ୍ତୁ ଉଚିତ ହାସ୍ୟରସ ମଧ୍ୟରେ ଭଙ୍ଗ, ବ୍ୟଙ୍ଗ, ବିଦ୍ରୂପ, ବିକ୍ରିୟା, ଅନୁକ୍ରିୟା, ଅତିଭାଷଣ, ଅପଭାଷଣ, ଅନୁଭାଷଣ, ସମଭାଷଣ, ଅସଙ୍ଗତି, ଅସାମଞ୍ଜସ୍ୟ ପ୍ରଭୃତି ନାନା ଉପାୟରେ ଜୀବନର ଚିତ୍ର ଲଘୁ ଭାବରେ ଉପସ୍ଥାପିତ କରାଯାଇଥାଏ, କିନ୍ତୁ ଓଡ଼ିଆ ନାଟକରେ କେତେକ ଆଙ୍ଗିକ ବିକ୍ରିୟା ଓ ବାଚନିକ ଅପଭାଷଣ ଉପରେ ଆଜି ପର୍ଯ୍ୟନ୍ତ ହାସ୍ୟରସ ପ୍ରତିଷ୍ଠିତ । ନୂତନ ରସରଚନା ପ୍ରତି ଯଥେଷ୍ଟ ଧ୍ୟାନ ଦିଆଯାଇ ନାହିଁ । ଠିକ୍ ଅନୁରୂପ କାରଣରୁ ଓଡ଼ିଆ ସାହିତ୍ୟରେ ରମ୍ୟ ରଚନା ମଧ୍ୟ ପ୍ରସାର ଲାଭ କରି ପାରିନାହିଁ । କରୁଣରସ ପରିବେଷଣରେ ମଧ୍ୟ ଅନ୍ତର୍ଦୃଷ୍ଟି ଅଭାବରୁ ନାଟକରଚନା କ୍ଷେତ୍ରରେ ନାନା ବିଶୃଙ୍ଖଳା ଜାତ ହେଉଅଛି; କାରଣ ରସପୋଷକ ଅନ୍ତର୍ଦୃଷ୍ଟିକୁ ରୂପାୟିତ କରିବାକୁ ହେଲେ ଯେଉଁ ସୂକ୍ଷ୍ମ ଅନୁଭୂତିର ପ୍ରୟୋଜନ ଓ ଜୀବନାଦର୍ଶର ପ୍ରସାର ଆବଶ୍ୟକ ତାହା ଆଜି ପର୍ଯ୍ୟନ୍ତ ଅଳ୍ପ ଓଡ଼ିଆ ନାଟକରେ ଦେଖା ଯାଇଅଛି । ସାହିତ୍ୟ ଆଜିକାଲି କେବଳ ସ୍ଥୂଳ ଇନ୍ଦ୍ରିୟଗ୍ରାହ୍ୟ ବିଷୟମାନଙ୍କରେ ଆବଦ୍ଧ ନୁହେଁ । ସାହିତ୍ୟିକ ଏକ ଦିଗରେ ସୂକ୍ଷ୍ମମନଃସମୀକ୍ଷା ମନୋବୃତ୍ତି ବିଶ୍ଳେଷଣଦ୍ୱାରା ହୃଦୟର ଅନ୍ତଃସ୍ଥଳରେ ପ୍ରବେଶ ଲାଭ କରିବାକୁ ସଚେଷ୍ଟ ହୁଏ, ଅନ୍ୟ ଦିଗରେ ଦୃଷ୍ଟିର ପ୍ରସାରଦ୍ୱାରା ଜୀବନର ଆଦର୍ଶକୁ ଉପଲବ୍ଧି କରିବା ପାଇଁ ଆଗ୍ରହୀ ହୁଏ । ବିଜ୍ଞାନରେ

ଅଣୁବୀକ୍ଷଣ ଓ ଦୂରବୀକ୍ଷଣ ଯେପରି ମନୁଷ୍ୟର ଦୃଷ୍ଟିଶକ୍ତିକୁ ବହୁ-ଗୁଣରେ ବର୍ଦ୍ଧିତ କରିଅଛି, ସାହିତ୍ୟରି ସେହିପରି ସୂକ୍ଷ୍ମଦୃଷ୍ଟି ଓ ପ୍ରସାରିତ ଦୃଷ୍ଟି, ଅନ୍ତର୍ଦୃଷ୍ଟି ଓ ଦୂରଦୃଷ୍ଟି ମନୁଷ୍ୟର ଜୀବନ ଦର୍ଶନକୁ ପ୍ରସାରିତ କରିଅଛି । ଅବଶ୍ୟ ଅତି ପ୍ରାଚୀନ କାଳରୁ ସାହିତ୍ୟ ମଧ୍ୟରେ ଦୃଷ୍ଟିର ଏହି ସୂକ୍ଷ୍ମତା ଓ ପ୍ରସାର ରୂପାୟିତ ହୋଇଅଛି ଓ ଏହାରି ଦ୍ୱାରା ଉପନିଷଦରେ ଅଜ୍ଞାନ ଅନ୍ଧକାରର ପାରଦେଶରେ ଆଦିତ୍ୟ ବର୍ଣ୍ଣ ମହାନ୍ ପୁରୁଷର ଉପଲବ୍ଧି ଓ ମୈତ୍ରେୟୀର ସାଧାରଣ ବସ୍ତୁର ପ୍ରତ୍ୟାଖ୍ୟାନ କାବ୍ୟଧର୍ମୀ ହୋଇ ପାରିଅଛି, କିନ୍ତୁ ଆଜିକାଲି ବିଚିତ୍ର ଅନୁଭୂତିର ବହୁମୁଖୀ ପ୍ରସାର ମଧ୍ୟରେ ଏପରି ବସ୍ତୁ ନିରପେକ୍ଷ ଦୃଷ୍ଟି ପ୍ରସାରକୁ ସାହିତ୍ୟରେ ରୂପାୟିତ କରିବା ଆୟାସସାଧ୍ୟ ଓ ପ୍ରତିଭାସାପେକ୍ଷ ହୋଇ ପଡ଼ିଅଛି ।

ନାଟ୍ୟ ସାହିତ୍ୟର ସମ୍ୟକ୍ ଅଭିବୃଦ୍ଧି ନିମନ୍ତେ ଦୁଇଗୋଟି ଉପାୟ ଅବଲମ୍ବିତ ହୋଇପାରେ । ପ୍ରଥମତଃ ଆମ୍ଭମାନଙ୍କୁ ବର୍ତ୍ତମାନ ଶକ୍ତିରେ ଅନୁକରଣ ଓ ଅନୁସରଣ କରିବାକୁ ହେବ । କାରଣ ଯୁଗୋପଯୋଗୀ ସାହିତ୍ୟର ବିକାଶ କରିବାକୁ ହେଲେ ଅକ୍ଲାନ୍ତ ଚେଷ୍ଟାରେ ପ୍ରଚୁର ସାହିତ୍ୟ ସୃଷ୍ଟି କରିବାକୁ ପଡ଼ିବ । ସଂଖ୍ୟାଗତ ପ୍ରାଚୁର୍ଯ୍ୟ ଥିଲେ ଓ ସୃଷ୍ଟିର ପ୍ରାଚୁର୍ଯ୍ୟକୁ ସମଧିକ ଉତ୍ସାହିତ କଲେ ଶନେ ଏଥିରେ ପ୍ରତିଭାର ସନ୍ଧାନ ମିଳିବ, ଏହା ପ୍ରାକୃତିକ ନିୟମା-ନୁଗତ ବିକାଶ । ପ୍ରଥମରୁ ଗୁଣଗତ ଉତ୍କର୍ଷ ପ୍ରତି ଦୃଷ୍ଟି ରଖିଲେ ସାହିତ୍ୟର ପ୍ରସାର ବିଳମ୍ବିତ ହେବ । କିନ୍ତୁ ସଙ୍ଗେ ସଙ୍ଗେ ସମା-ଲୋଚନା, ବିଶ୍ୱର ପ୍ରକୃତି ବିଷୟରେ ଜ୍ଞାନ ଲାଭ କରି ନାଟକର ସୌଷ୍ଠବ ସମ୍ପାଦନ ବିଷୟରେ ଯତ୍ନବାନ ହେବାକୁ ପଡ଼ିବ । ଏହା ଦ୍ୱିତୀୟ ଉପାୟ । ନାଟକ ବିଚାର କରିବା ନିମନ୍ତେ ଆମ୍ଭମାନଙ୍କୁ ପ୍ରାଚୀନ ଗ୍ରୀକ୍ ଓ ସଂସ୍କୃତ ନାଟକମାନଙ୍କର ଅନୁଶୀଳନ କରିବାକୁ

ହେବ, ସଂସ୍କୃତ ଓ ଅନ୍ୟାନ୍ୟ ଭାଷାରେ ନାଟକ ବିଷୟର ଗ୍ରନ୍ଥମାନଙ୍କୁ ଆୟତ୍ତ କରିବାକୁ ହେବ । ପୁଣି ଆଧୁନିକ ସମାଲୋଚନା ଗ୍ରନ୍ଥ ବା ବିଦ୍ୱଜ୍ଜନ ସହିତ ସମ୍ୟକ୍ ପରିଚିତ ହେବାକୁ ପଡ଼ିବ ଓ ଦେଶ ବିଦେଶର ନାଟକ ବିଷୟରେ ଜ୍ଞାନାର୍ଜନ କରି ଅଭିନୟ ଦର୍ଶନାଦି ଦ୍ୱାରା ସେମାନଙ୍କର ଉତ୍କର୍ଷାପକର୍ଷ ବିଷୟରେ ବିଚାରଧାରା ପ୍ରବର୍ତ୍ତିତ କରିବାକୁ ହେବ । ଏକ ଦିଗରେ ପ୍ରାଚୀନ ପ୍ରତି ଆସ୍ଥା ରଖି ସେଥିର ଭିତ୍ତି ଉପରେ ସୁପ୍ରତିଷ୍ଠିତ ହୋଇ, ପରମ୍ପରା ପ୍ରତି ଯଥେଷ୍ଟ ଶ୍ରଦ୍ଧା ଓ ଅନୁରକ୍ତି ରଖି ତହିଁର ଧାରାବନ୍ଧନରୁ ନିଜକୁ ମୁକ୍ତ କରିବାକୁ ହେବ, ଅନ୍ୟ ଦିଗରେ ନୂତନର ମୋହରେ ଅନ୍ଧ ଭାବରେ ପରିଚାଳିତ ନ ହୋଇ ପ୍ରାଚୀନ ଐତିହ୍ୟକୁ ନୂତନ ସୃଷ୍ଟି ମଧ୍ୟରେ ରୂପାୟିତ କରିବାକୁ ପଡ଼ିବ । ପୂର୍ବର ପ୍ରାଚୀନ ଭିତ୍ତିକୁ ଛାଡ଼ି ଦେଇ କେବଳ ନୂତନ ପାଇଁ ନୂତନ ସୃଷ୍ଟିରେ ଓ ବିଦେଶର ଅନୁକରଣରେ ଆଧୁନିକ ସାହିତ୍ୟିକମାନେ ପ୍ରବୃତ୍ତ ହୋଇଥିଲେ, ସେତେବେଳେ ନାଟକ ସୃଷ୍ଟି ଏତେ କଠିନ ନ ଥିଲା । ପୁଣି କେବଳ ପ୍ରାଚୀନ ରସ ଶାସ୍ତ୍ରର ଅନୁବର୍ତ୍ତନ କରି 'ପରିମଳାସହ ଗମନ' ପ୍ରଭୃତି ନାଟକ ରଚନା ମଧ୍ୟ ସହଜସାଧ୍ୟ ଥିଲା । କିନ୍ତୁ ଉଭୟର ସମନ୍ୱୟ ସାଧନ କରିବା ନିମନ୍ତେ ଜ୍ଞାନର ପ୍ରୟୋଜନ, ସାଧନାର ପ୍ରୟୋଜନ, ଅତି ସୂକ୍ଷ୍ମର ମତ ଅନୁଶୀଳନର ପ୍ରୟୋଜନ ।

ଏପରି ସାଧନାର ସୁଯୋଗ ସୁବିଧା ସୃଷ୍ଟି କରିବା କେବଳ ଜାତୀୟ ସରକାର ଓ ବିଶ୍ୱବିଦ୍ୟାଳୟର ସହଯୋଗ ଦ୍ୱାରା ହିଁ ସମ୍ଭବ । କିଛି ଦିନ ପୂର୍ବେ ଯେଉଁ ସଙ୍ଗୀତ ନାଟକ ଏକାଡେମୀ ସ୍ଥାପିତ ହୋଇଥିଲା, ସେଥିରେ ଉଦ୍ୟୋକ୍ତାମାନଙ୍କର ଗୋଟିଏ ନାଟକ ଶିକ୍ଷଣାଳୟ ପ୍ରତିଷ୍ଠିତ କରି ଶିକ୍ଷା, ଆଲୋଚନା, ଅଭିନୟ,

ବହୁର ଗ୍ରନ୍ଥର ଅନୁଶୀଳନ, ନାଟକର ଇତିହାସ ସଙ୍କଳନ ଓ ନାଟ୍ୟଶାଳା ସମ୍ପର୍କରେ ସମ୍ବାଦାଦି ସଂଗ୍ରହ କରିବାର ପରିକଳ୍ପନା ଥିଲା, କିନ୍ତୁ ଆଜି ପର୍ଯ୍ୟନ୍ତ ସେ ବିଷୟରେ କୌଣସି ଚେଷ୍ଟା ହୋଇ-ନାହିଁ । ଏ ସମସ୍ତ ବହୁ ବ୍ୟୟ ସାଧ୍ୟ ବ୍ୟାପାର, କିନ୍ତୁ ଜାତୀୟ ସରକାର ମଧ୍ୟ ନାଟକ ଏକାଡେମୀକୁ ସାହାଯ୍ୟ ଦେବା ନିମନ୍ତେ କୃତସଙ୍କଳ୍ପ । ଏଣୁ ଏ ଦିଗରେ ଅଗ୍ରସର ହେବାରେ ନାଟକ ଏକାଡେମୀ ପକ୍ଷରେ ବାଧା ନାହିଁ । ବିଶ୍ୱବିଦ୍ୟାଳୟ ମଧ୍ୟ ସେହିପରି ପ୍ରାଚୀନ ଓ ନବୀନ ନାଟ୍ୟକଳା ବିଷୟକ ବହୁର ଗ୍ରନ୍ଥମାନଙ୍କର ଓ ବିଭିନ୍ନ ଦେଶର ନାଟ୍ୟକାରମାନଙ୍କର ଶ୍ରେଷ୍ଠ ନାଟକମାନଙ୍କର ଅନୁବାଦ ଓଡ଼ିଆ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବାକୁ ଅଗ୍ରସର ହେବା ପ୍ରୟୋଜନ । ନାଟକ ଏକାଡେମୀ ଓ ବିଶ୍ୱବିଦ୍ୟାଳୟ ଉଭୟର ସହଯୋଗ ଦ୍ୱାରା ଜାତୀୟ ସାହିତ୍ୟ ଓ ନାଟ୍ୟକଳାର ଉନ୍ନତି ଅବଶ୍ୟମ୍ଭାବୀ ।

ସଂସ୍କୃତ ନାଟକର ଯେଉଁ ଐତିହ୍ୟ ଅଛି, ଯେଉଁ ରସବୋଧ ନିମନ୍ତେ ଶକୁନ୍ତଳା ନାଟକ ଆଜି ପର୍ଯ୍ୟନ୍ତ ଅନବଦ୍ୟ ସୃଷ୍ଟି ହୋଇ ରହିଅଛି, ତାହା ବର୍ତ୍ତମାନ ଅନୁକରଣ କରିବା ସମ୍ଭବ ନୁହେଁ । କିନ୍ତୁ ଓଡ଼ିଶାର ନିଜସ୍ୱ ଐତିହ୍ୟ ତାହାର ସଙ୍ଗୀତରେ ପରିଦୃଷ୍ଟ । ସଙ୍ଗୀତର ମୂର୍ଚ୍ଛନାରେ ଓଡ଼ିଆ କାବ୍ୟ ରସାପ୍ଲୁତ ଓ ନାଟକ କ୍ଷେତ୍ରରେ ଏହି ସଙ୍ଗୀତ ହିଁ ଓଡ଼ିଆ ସାହିତ୍ୟର ବିଶେଷତ୍ୱ । ଏପରିକି ଅତି ନିକୃଷ୍ଟ ଓଡ଼ିଆ ନାଟକରେ ମଧ୍ୟ ଏପରି ଅନେକ ଉଚ୍ଚ କୋଟିର ସଙ୍ଗୀତର ସନ୍ଧାନ ମିଳେ ଯାହାକି ନାଟକର ଅନ୍ୟାନ୍ୟ ଦୋଷକୁ ସାମୟିକ ଭାବରେ ମନରୁ ଅପସୃତ କରିଦିଏ । ଯେଉଁମାନେ କଟ୍ଟିହନ ପୂର୍ବର ମୋହନ ଗୋସ୍ୱାମୀଙ୍କର ରାସଦଳ ପ୍ରଭୃତିଙ୍କର

ସଂଗୀତ ପରିବେଷଣ ଓ ଚମ୍ପୂ ଅଭିନୟ'ବି ଦେଖିଥିବେ ସେମାନେ ସହଜରେ ଉପଲବ୍‌ଧି କରିପାରିବେ ଯେ ଓଡ଼ିଆ ନାଟକ ଯଦି ସେହି ଦିଗରେ ଗତିକରିଥାଆନ୍ତା ତେବେ ଓଡ଼ିଶାର ନୃତ୍ୟନାଟ୍ୟ ଗୋଟିଏ ବିଶେଷ ଗୌରବର ସ୍ଥାନ ଅଧିକାର କରିପାରିଥାଆନ୍ତା । ଏହି ସଂଗୀତ ମାଧୁର୍ଯ୍ୟରେ କବିଚନ୍ଦ୍ରଙ୍କର ନାଟକ ସଦା ବିମଣ୍ଡିତ । ଏହି ସଂଗୀତ ମୂର୍ଚ୍ଛନାରେ 'ଲବଣ୍ୟବତୀ'ର ନାଟ୍ୟରୂପ ଲୀଳାୟିତ । କିନ୍ତୁ ସଂଳାପର ଦୁର୍ବଳତା ଓ ଜୀବନାଦର୍ଶ ସହିତ ସମ୍ୟକ୍ ପରିଚୟର ଅଭାବରୁ ବିଦେଶୀୟ ନାଟକର ଓଡ଼ିଶୀ ଅନୁକରଣମାନ ବହୁ କ୍ଷେତ୍ରରେ ବ୍ୟର୍ଥ ହୋଇ ପଡ଼ୁଅଛି । ଅଧିକାଂଶ ଓଡ଼ିଆ ନାଟକରେ ସଂଳାପର ଦୁର୍ବଳତା ଏତେ ପରିସ୍ଫୁଟ ଯେ ବିଷୟ-ଗୌରବ ଥାଇ ମଧ୍ୟ ନାଟକ ସାହିତ୍ୟିକ ପ୍ରତିଷ୍ଠା ଲଭ କରିବାକୁ ଅକ୍ଷମ । ଯେଉଁମାନେ 'ଭଞ୍ଜକବି' ନାଟକର ସଂଳାପ ସହିତ 'ବିଦ୍ୟାସାଗର' ବା 'ଶ୍ରୀ ମଧୁସୂଦନ' ନାଟକର ସଂଳାପର ତୁଳନା କରିବେ ସେମାନେ ଏହି ଦୁର୍ବଳତା ସହଜରେ ଅନୁଭବ କରି-ପାରିବେ । ଅନ୍ୟ ଦିଗରେ ଜୀବନାଦର୍ଶ ବିଷୟରେ ଜ୍ଞାନଲାଭ କରିବାକୁ ହେଲେ ଏକ ଦିଗରେ ଉପନିଷଦ୍, ବୈଷ୍ଣବ ଦର୍ଶନ ପ୍ରଭୃତି ସମ୍ୟକ୍ ଭାବରେ ପଢ଼ିବାକୁ ହେବ ଅନ୍ୟ ଦିଗରେ Goethe ରବୀନ୍ଦ୍ରନାଥ ପ୍ରଭୃତି ମନୀଷୀମାନଙ୍କର ବିଶ୍ୱମାନବିକତା, ପରିପୂର୍ଣ୍ଣ ମାନବତା, ଜୀବନ ଦେବତା, ବହୁମୁଖୀ ସୂକ୍ଷ୍ମାନୁଭୂତି ପ୍ରଭୃତି ତତ୍ତ୍ୱ ଆୟତ୍ତ କରିବାକୁ ହେବ । ଯେଉଁ ଅକ୍ଳାନ୍ତ ସାଧନାଦ୍ୱାରା ଏହା ସମ୍ଭବପର ସେହି କଷ୍ଟସାଧ୍ୟ ମାର୍ଗ ଅନୁସରଣ କରିବାକୁ ଆଜ ମୁଁ ସମବେତ ସାହିତ୍ୟିକମାନଙ୍କୁ ଆହ୍ୱାନ କରୁଅଛି । ଏହି ସାଧନାର ଅଭାବରୁ ଓଡ଼ିଆରେ ସାର୍ଥକ ରୂପକ ଲେଖା ହୋଇପାରୁ ନାହିଁ, ସାର୍ଥକ ଏକାଙ୍କିକା ରଚିତ ହୋଇ

ପାରୁନାହିଁ, ପୃଥିବୀର ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିବା ସମ୍ଭବପର ହେଉନାହିଁ । ବହୁ ଆୟାସସାଧ୍ୟ ସାଧନା ସହିତ, ବହୁମୁଖୀ ପ୍ରତିଭା ଓ ଓଡ଼ିଶାର ପରମ୍ପରା ପ୍ରତି ଶ୍ରଦ୍ଧାର ସମନ୍ୱୟ ଘଟିଲେ ଆମ୍ଭମାନଙ୍କର ସାହିତ୍ୟିକ ଅବସନ୍ନତା ଯେ ଅଚିରେ ଦୂରୀଭୂତ ହେବ ଏଥିରେ ସନ୍ଦେହ ନାହିଁ ।

